# ପତ୍ର ପତ୍ରିକା ଓ ଲେଖକ ପରିଚୟ ଫୁଲବାଣୀ

## ୧୯୮୯




ସଂ ପା ଦ ନା

ରଘୁନାଥ ରଥ          ବାବାଜୀ ଚରଣ ସ୍ୱାଇଁ



ମୂଲ୍ୟ :— ୧୫.୦୦

ମୁଦ୍ରଣ :- * କପିଳ ପ୍ରିଣ୍ଟେକ୍ସ, ବଉଦ *

# ପତ୍ର ପତ୍ରିକା ଓ ଲେଖକ ପରିଚୟ
## ଫୁଲବାଣୀ

ସମ୍ପାଦକ :-

**ରଘୁନାଥ ରଥ**
**ବାବାଜି ଚରଣ ସ୍ୱାଇଁ**

ପ୍ରକାଶକ :-

**ଦୀନବନ୍ଧୁ ହୋତା** ଏମ୍. ଏ. ଏଲ୍. ଏଲ୍. ବି.
ଆଡ୍‌ଭୋକେଟ୍, ବାବୁସାହି, ବଉଦ

ପ୍ରଥମ ସଂସ୍କରଣ :-

**ଧନୁ ସଂକ୍ରାନ୍ତି ୧୯୮୯**

ମୁଦ୍ରଣ :- **କପିଳ ପ୍ରିଣ୍ଟେକ୍ସ**, ବଉଦ. ( ଫୁଲବାଣୀ )

ମୂଲ୍ୟ :- ଟ ୧୫-୦୦

***Patra Patrika O Lekhaka Parichya***
***P H U L B A N I***

*Edited by :-*

**Raghunatha Rath.**
**Babaji Charan Swain**

*Publisher :-*

**Dinabandhu Hota,** Advocate
Babusahi, ( Boudh- Phulbani )

*First Gadition :-*

**Dhanu Sankranti**
***1 9 8 9***

*Printed :-*

**Kapil Printex**
Boudhraj ( Phulbani )

*Price :-* **Rs 15/—**

ଏହି ଦୁଷ୍ପ୍ରାପ୍ୟ ପୁସ୍ତକ ପ୍ରକାଶନରେ ଯେଉଁ ବଦାନ୍ୟ ବନ୍ଧୁଗଣ ଆର୍ଥିକ ସାହାଯ୍ୟ ପ୍ରଦାନ କରିଛନ୍ତି, ସେମାନଙ୍କୁ କୃତଜ୍ଞତା ଜଣାଉଛୁ ।

| | | | |
|---|---|---|---|
| ଶ୍ରୀ ଦେବରାଜ ମହାରଣା | ଟ ୫୦୧-୦୦ | ଶ୍ରୀ ଗୋବିନ୍ଦ ଚନ୍ଦ୍ର ମହାନ୍ତି | ଟ ୧୦୦-୦୦ |
| ଶ୍ରୀ ସୁକେଶ ଚନ୍ଦ୍ର ଶତ୍ରୁଶଲ୍ୟ | ଟ ୨୫୦-୦୦ | ଶ୍ରୀ ଫକୀରମୋହନ ନାୟକ | ଟ ୧୦୦-୦୦ |
| ଶ୍ରୀ ରାମଚନ୍ଦ୍ର ତ୍ରିପାଠୀ | ଟ ୨୫୦-୦୦ | ଶ୍ରୀ ଅରୂପ କୁମାର ଜେନା | ଟ ୧୦୦-୦୦ |
| ଶ୍ରୀ ହିମାଂଶୁ ଶେଖର ପାଢ଼ୀ | ଟ ୨୦୧-୦୦ | ଶ୍ରୀ ଡାକ୍ତର ଲମ୍ବୋଦର ପତି | ଟ ୧୦୦-୦୦ |
| ଶ୍ରୀ ରାଜକିଶୋର ମହାରଣା | ଟ ୧୭୫-୦୦ | ଶ୍ରୀ ଶୋଭାବତୀ ହୋତା | ଟ ୧୨୬-୦୦ |
| ଶ୍ରୀମତୀ ଲେଖାବତୀ ସ୍ୱାଇଁ | ଟ ୨୨୬-୦୦ | ଶ୍ରୀ ରବୀନ୍ଦ୍ରନାଥ ମିଶ୍ର | ଟ ୫୦-୦୦ |
| ଶ୍ରୀ ସୁରୁ ଦାସ | ଟ ୧୦୧-୦୦ | ଶ୍ରୀ ଜଗନ୍ନାଥ ଦାସ | ଟ ୫୦-୦୦ |
| ଶ୍ରୀ ଲଳିତ କୁମାର ସରାଫ | ଟ ୧୦୧-୦୦ | ଶ୍ରୀ ଚମନଲାଲ ଅଗ୍ରୱାଲ | ଟ ୫୦-୦୦ |
| ଶ୍ରୀ ସତ୍ୟନାରାୟଣ ସାହୁ | ଟ ୧୦୧-୦୦ | ଶ୍ରୀ ସୁବୋଧ ଚନ୍ଦ୍ର ସାହୁ | ଟ ୫୦-୦୦ |
| ଶ୍ରୀ ରାଜେନ୍ଦ୍ର ପ୍ରସାଦ | ଟ ୧୦୧-୦୦ | ରାଜମହଲ ହୋଟେଲ | ଟ ୩୧-୦୦ |
| ଶ୍ରୀ ସତ୍ୟବାଦୀ ପଣ୍ଡା | ଟ ୧୦୧-୦୦ | ଶ୍ରୀ ଦ୍ୱାରିକା ପ୍ରସାଦ ଅଗ୍ରୱାଲ | ଟ ୩୧-୦୦ |
| ଶ୍ରୀ ସୁଧୀର କୁମାର କର୍ଣ୍ଣ | ଟ ୧୦୦-୦୦ | ସ୍ୱର୍ଗତ କୃତ୍ତିବାସ ଦେଓ | ଟ ୨୫-୦୦ |
| ଶ୍ରୀ ଭଗୀରଥି ମଣ୍ଡଳ | ଟ ୧୦୦-୦୦ | ଶ୍ରୀ ଦୁର୍ଗାଶଙ୍କର ରଥ | ଟ ୨୧-୦୦ |
| ଶ୍ରୀ ମହାନନ୍ଦ ପଲାମ | ଟ ୧୧୦-୦୦ | | ୩୨୩୫-୦୦ |

ପୁସ୍ତକ ପ୍ରକାଶନରେ ହୋଇଥିବା ଖର୍ଚ୍ଚର ହିସାବ ( ୫୦୦ ଖଣ୍ଡ ବହି )

| | |
|---|---|
| କାଗଜ ଦାମ୍ | ଟ ୧୨୮୦-୦୦ |
| ଛପା ଖର୍ଚ୍ଚ | ଟ ୧୧୭୦-୦୦ |
| ମଲାଟ | ଟ ୧୭୫-୦୦ |
| ବନ୍ଧାଇ | ଟ ୬୧୦-୦୦ |
| ମୋଟ | ଟ ୩୨୩୫-୦୦ |

ତା ୧୫।୧୨।୮୯

ଦୀନବନ୍ଧୁ ହୋତା

# ॥ ସୂଚୀପତ୍ର ॥



—୦—

# ସାମାନ୍ୟ କଥନ

ଗୋଟିଏ ଜାତିର ଇତିହାସ ଅଧ୍ୟୟନ ନିମନ୍ତେ ପ୍ରତ୍ନତତ୍ତ୍ୱ ପରି ସାହିତ୍ୟର ଭୂମିକା ବି ଗୁରୁତ୍ୱପୂର୍ଣ୍ଣ । ଏଣୁ ପୁରାତନ ସାହିତ୍ୟ ମଧ୍ୟ ପ୍ରତ୍ନତାତ୍ତ୍ୱିକ ବସ୍ତୁ ଭାବରେ ଗଣ୍ୟ କରାଯାଇଥାଏ । ପ୍ରତିଟି ମୁହୂର୍ତ୍ତ ଇତିହାସ ଭିତରକୁ ଠେଲି ହୋଇ ଯାଉଥାଏ । ସେହି ପରିପ୍ରେକ୍ଷୀରେ ସାହିତ୍ୟିକ ମାନଙ୍କର ପରିଚୟ ସଂକଳନ କରିବା ଏକ ଐତିହାସିକ ଦାୟିତ୍ୱ ଏବଂ ଆବଶ୍ୟକତା ଏଥିରେ ଦ୍ୱିମତ ନାହିଁ ।

District Gazatteer of Orissa, Baudh Khandmals' ବହିର ୩୨୮ ପୃଷ୍ଠାରେ writers and poets ଙ୍କ ନିମନ୍ତେ କେବଳ ଏଗାର ଧାଡ଼ିର ଗୋଟିଏ ଅନୁଚ୍ଛେଦ ମାତ୍ର ରହିଛି । ସେଥିରେ କେବଳ ଫୁଲବାଣୀ ଉପଖଣ୍ଡର ଲୋକ କବି ଜଗତ ସାହୁ ଓ ରତ୍ନାକର ସାହୁ ବଉଦ ଉପଖଣ୍ଡର ଆଧୁନିକ କବି ଭୂତପୂର୍ବ କ୍ୟାବିନେଟ ମନ୍ତ୍ରୀ ନଟବର ପ୍ରଧାନଙ୍କ ନାମ ମାତ୍ର ଉଲ୍ଲେଖ ରହିଛି । ପରିତାପର ବିଷୟ ନିଜକୁ ସଚେତନ ନାଗରିକ ଭାବରେ ଗର୍ବ ଅନୁଭବ କରୁଥିବା ବିଶିଷ୍ଟ କବି ଓ ଲେଖକ ଏହି ସଂପର୍କରେ ପଦେ ହେଲେ ପାଟି ଖୋଲି ନାହାନ୍ତି । ଯଦିଓ ବୃହତ୍ତର ସ୍ୱାର୍ଥକୁ ସେମାନେ ବାଦ ଦେଇ ଶ୍ରେଷ୍ଠ ଶ୍ରେଷ୍ଠ କଥାରେ ଭୁମୁକ କାଣ୍ଡ ସୃଷ୍ଟି କରିଥିବାର ନଜିର ଅଛି । କଣ ପ୍ରକୃତରେ ଫୁଲବାଣୀ ଜିଲ୍ଲାରେ କବି/ଲେଖକ ନାହାନ୍ତି ? ତାହାକୁ ଦେଖିଲେ ସେଇପରି ହିଁ ଜଣା ଯାଇଥାଏ । କାରଣ କୌଣସି କବି ବା ଲେଖକଙ୍କର ରାଜ୍ୟ ସ୍ତରରେ ପ୍ରତିନିଧିତ୍ୱ କଲଭଳି ଗୋଟିଏ ବହି ବି ଏ ଯାଏ ପ୍ରକାଶ ପାଇ ନାହିଁ କହିଲେ ଚଳେ ।

District Gazatteer ପଢ଼ିଲା ପରେ ମର୍ମାହତ ହେଲି । ମନଟା କେମିତି କେମିତି ଲାଗିଲା । ଫୁଲବାଣୀ ଜିଲ୍ଲାକୁ ଦୀର୍ଘ ଦିନ ଆପଣେଇ ନେଲା ପରେ ତାହା ପ୍ରତି ଅତ୍ୟଧିକ ଆସକ୍ତି ଓ ମୋହର ଦାୟିତ୍ୱ ବୋଧ ନିମନ୍ତେ ଲେଖକ

ପରିଚୟ ସଂଗ୍ରହ କରିବାରେ ମନୋନିବେଶ କଲି । ଅବଶ୍ୟ ଏହା ପୂର୍ବରୁ ଯୁବ ଲେଖକ ସାମ୍ମୁଖ୍ୟ, ଫୁଲବାଣୀର ମୁଖପତ୍ର " ଦୀପଶିଖା " ଏପ୍ରିଲ ୧୯୮୪ ସଂଖ୍ୟାରେ ୭୪ କବି ଲେଖକଙ୍କର ଏକ ତାଲିକା ପ୍ରକାଶିତ ହୋଇଥିଲା । ଜିଲ୍ଲା ଲେଖକ ପରିଷଦର ସଂପାଦକ ବନ୍ଧୁ ବାବାଜୀ ଚରଣ ସ୍ୱାଇଁ ୧୯୮୧ ପ୍ରଥମାର୍ଦ୍ଧରେ ଜିଲ୍ଲାର ପୂର୍ଣ୍ଣାଙ୍ଗ ଲେଖକ ପରିଚୟଟିଏ ପ୍ରକାଶ ନିମନ୍ତେ ସାହିତ୍ୟିକ ବନ୍ଧୁମାନଙ୍କ ସମ୍ମୁଖରେ ଏକ ପ୍ରସ୍ତାବ ରଖିଥିଲେ ।

ମୁଁ ୭।୯।୮୬ ବିନାୟକ ଚତୁର୍ଥୀ ଠାରୁ ଲେଖକ ପରିଚୟ ସଂଗ୍ରହ ଆରମ୍ଭ କଲି । ନିଜେ ସଂଗ୍ରହ କରିବା ସଙ୍ଗେ ସଙ୍ଗେ କବି ଦୋଳଗୋବିନ୍ଦ ପାଣିଗ୍ରାହୀ ( ହରଭଙ୍ଗା ) ଶିଶୁ ସାହିତ୍ୟିକ ରାମଚନ୍ଦ୍ର ପଣ୍ଡା ( ଖରସକୁଲେଇ ) ସାମ୍ବାଦିକ କୃଷ୍ଣଚନ୍ଦ୍ର ରାଉତ ( କଣ୍ଟାମାଳ ) କବି କିଶୋର ମିଶ୍ର ( ବଉଦ ) ଓ ଆଉ କେତେକଙ୍କୁ ସେମାନଙ୍କ ଅଞ୍ଚଳର ଲେଖକ ମାନଙ୍କ ପରିଚୟ ପ୍ରୋଫର୍ମାରେ ସଂଗ୍ରହ କରି ପଠାଇବା ପାଇଁ ଅନୁରୋଧ କରି ପତ୍ର ଦେଲି । କେତେକ ସାହିତ୍ୟ ଆସରରେ ମଧ୍ୟ ସଂଗ୍ରହ କାର୍ଯ୍ୟ କରାଗଲା ।

ସଂଗ୍ରହ କାର୍ଯ୍ୟରେ ବନ୍ଧୁ ରାମଚନ୍ଦ୍ର ପଣ୍ଡା, ପଦ୍ମଚରଣ ନାୟକ, ଗୁରୁ ପ୍ରସାଦ ଦାସ, ସଂସାରି ମେହେର, ଦୋଳଗୋବିନ୍ଦ ପାଣିଗ୍ରାହୀ ଉଲ୍ଲେଖଯୋଗ୍ୟ ସହଯୋଗ କରିଥିବାରୁ ଏହି ଅବସରରେ ଆନ୍ତରିକ କୃତଜ୍ଞତା ଜଣାଉଛି ।

ସଂଗ୍ରହ କାର୍ଯ୍ୟ ପ୍ରାୟ ପଞ୍ଚଷଷ୍ଠ ଭାଗ ଶେଷ ହେଲା ପରେ କବି ବନ୍ଧୁ ଶ୍ରୀ ବାବାଜୀ ଚରଣ ସ୍ୱାଇଁ ସ୍ୱତଃ ପ୍ରବୃତ୍ତ ହୋଇ ଆଗେଇ ଆସିଲେ ସହାୟତା ଦେବା ପାଇଁ । ପ୍ରାୟ ଅବଶିଷ୍ଟ ଲେଖକଙ୍କ ପରିଚୟ ସଂଗ୍ରହ କରିବା ସଙ୍ଗେ ସଙ୍ଗେ ପାଣ୍ଡୁଲିପି ପ୍ରସ୍ତୁତ କରିବାର ଗୁରୁ ଦାୟିତ୍ୱ ସେ ବହନ କଲେ । ଲେଖକ ପରିଚୟ ସହ ଏହି ସଂକଳନରେ ଏ ଜିଲ୍ଲାରେ ଅତୀତରୁ ଅଦ୍ୟାବଧି ପ୍ରକାଶ ପାଇଥିବା ପତ୍ର ପତ୍ରିକା ଓ ବଉଦ ରାଜବଂଶର କବି ମାନଙ୍କ ନିମନ୍ତେ ସ୍ୱତନ୍ତ୍ର ଦୁଇଟି ଅଧ୍ୟାୟ ଯୋଗ କରିବା ନିମନ୍ତେ ଶ୍ରୀ ସ୍ୱାଇଁ ମଧ୍ୟ ପ୍ରସ୍ତାବ ଦେଲେ ।

ସଂକଳନ ପାଣ୍ଡୁଲିପି ପ୍ରସ୍ତୁତ ହେଲାପରେ ଛପିବା ଚିନ୍ତା ପଡ଼ିଲା । ଓଡ଼ିଶାର ବିଶିଷ୍ଟ ସଂଗ୍ରାହକ ପୂଜ୍ୟ ଅଜା (କଣା ଅଜା) ଦାଶରଥି ପଟ୍ଟନାୟକ (ଖଡ଼ପୁର, ପୁରୀ) ସଂକଳନଟି ଛପାଇବା ନିମନ୍ତେ ଭର୍ତ୍ସନା ଛଳରେ ଉତ୍ସାହିତ କଲେ । ଏହି ସମୟରେ ବଉଦର ବିଶିଷ୍ଟ କବି ଆଇନଜ୍ଞ ଶ୍ରୀଯୁକ୍ତ ଘନକନ୍ଦ ହୋତା ଆଗେଇ ଆସିଲେ ଆର୍ଥିକ ସହାୟତା ଦେବାପାଇଁ । ତାହାଙ୍କ ଐକାନ୍ତିକ ନିଷ୍ଠା ଓ ପ୍ରଚେଷ୍ଟାରେ ସଂକଳନଟି ଆଜି ଆଲୋକ ଦେଖିବାର ସୁଯୋଗ ପାଇ ଥିବାରୁ ହୃଦୟର ସମସ୍ତ ଭକ୍ତି ଓ କୃତଜ୍ଞତା ଏହି ଅବସରରେ ତାହାଙ୍କ ପଦରେ ଢ଼ାଳି ଦେଉଛୁ ।

ଇଏତ ଗଳ୍ପ ସଂକଳନ ପ୍ରସ୍ତୁତ ଓ ପ୍ରକାଶନ ବାବଦର କଥା । ପାଠକ ଓ ଗବେଷକଗଣ ଏହାର ଆବଶ୍ୟକତା ସମୟ କ୍ରମେ ଅନୁଭବ କରିବେ । ସଂକଳନଟିରେ ସମସ୍ତ ଲେଖକଙ୍କ ପରିଚୟ ସ୍ଥାନିତ କରିବା ନିମନ୍ତେ ଯଥା ସମ୍ଭବ ଉଦ୍ୟମ କରାଯାଇଥିବା ସତ୍ତ୍ୱେ ଅଜ୍ଞତା ବଶତଃ କେତେକ ଲେଖକଙ୍କ ପରିଚୟ ଯେ ରହିଯାଇ ନାହିଁ । ଦୃଢ଼ତାର ସହ କହିବା ସମ୍ଭବ ନୁହେଁ ଏହା ଯେ ଏକ ପୂର୍ଣ୍ଣାଙ୍ଗ ଲେଖକ ପରିଚୟ ଏପରି ଦାବୀ କରିବା ସଂପୂର୍ଣ୍ଣ ଅଯୌକ୍ତିକ ହେବ । କାରଣ କୌଣସି କାଳରେ ବି ଏପରି ପରିଚୟ ପୁସ୍ତିକା ସ୍ୱୟଂ ସଂପୂର୍ଣ୍ଣ ହୋଇ ନ ପାରେ । କେବଳ ଏ ଯାଏ ହୋଇ ନ ଥିବା ଅଭାବଟି ପୂରଣ ନିମନ୍ତେ ଏହା କେବଳ ଏକ ପଦକ୍ଷେପ ମାତ୍ର ।

ତଥ୍ୟ ସଂଗ୍ରହ ହେବା ସମୟରେ ଅନ୍ୟ ଜିଲ୍ଲାର କେତେକ ଲେଖକ ଯେଉଁମାନେ କିଛି କାଳ ଏ ଜିଲ୍ଲାର ସାହିତ୍ୟାକାଶକୁ ଉଦ୍ଭାସିତ କରିଥିଲେ, ସେମାନଙ୍କ ପରିଚୟ ବି ସଂଗୃହିତ ହୋଇଥିଲା । କିନ୍ତୁ ଛପା କାର୍ଯ୍ୟ ଆରମ୍ଭ ବେଳକୁ ସେମାନେ ଏ ଜିଲ୍ଲା ଛାଡ଼ି ଚାଲିଯାଇଥିବାରୁ ସେମାନଙ୍କ ପରିଚୟ ଏ ସଂକଳନରୁ ବାଦ ଦେବାକୁ ପଡ଼ିଲା ।

ପୁରୁଣାକଟକ ରଘୁନାଥ ରଥ
ତା

# ଅନୁ ପ୍ରବେଶ

**ଅଧ୍ୟାପକ ବିଶ୍ୱରଞ୍ଜନ**

ଓଡ଼ିଶାର ତେର ନମ୍ବର ଜିଲ୍ଲା ଭାବରେ ଅଭିହିତ ଏବଂ ବହୁ ବନାନୀ ଉପେକ୍ଷିତ ଫୁଲବାଣୀ କବି ଓ ଲେଖକ ଲାଗି ଯେ, ପ୍ରାଣ ଓ ପ୍ରେରଣାର ଉତ୍ସ ଏଥିରେ କିଛି ସନ୍ଦେହ ନାହିଁ । ପ୍ରକୃତି ଏ ଜିଲ୍ଲାକୁ ଅନନ୍ୟା ଅନୁପମା କରି ଗଢି ତୋଳିଛି । ଆଦିଗନ୍ତ ସବୁଜ ବନାନୀ, ଧୂସର ପାହାଡ଼, ଫୁଲର ଫସଲ ଭିତରେ ଫୁଲବାଣୀ ହେଉଛି ବନ୍ୟ ପ୍ରକୃତିର ଲୀଳାଭୂମି । ଭୌଗୋଳିକ ଅବସ୍ଥିତି ଦୃଷ୍ଟିରୁ ଏହା ହେଉଛି ଓଡ଼ିଶାର ହୃଦୟ । ଉତ୍ତର ଓଡ଼ିଶା, ଦକ୍ଷିଣ ଓଡ଼ିଶା ଓ ପଶ୍ଚିମ ଓଡ଼ିଶାର ଏହା ହେଉଛି ମିଳନ ସ୍ଥଳୀ । ତେଣୁ ଓଡ଼ିଶାର ପ୍ରାୟ ସବୁ ଅଞ୍ଚଳର ଭାଷା ଓ ସାହିତ୍ୟର ସମନ୍ୱୟ ସାଙ୍ଗକୁ ଫୁଲବାଣୀର ବନବାସୀ ଜନ ମାନଙ୍କର ନିଜସ୍ୱ ସଂସ୍କୃତି ଏହାର ସାଂସ୍କୃତିକ ଜୀବନକୁ ପରିପୁଷ୍ଟ କରିଛି । ସାହିତ୍ୟିକର ସୃଜନ ଶୀଳତା ଲାଗି ଅନୁକୂଳ ପରିବେଶ ତଥା ଆବଶ୍ୟକୀୟ ପୁଞ୍ଜି ଏଠାରେ ପ୍ରଚୁର ପରିମାଣରେ ଭରି ରହିଥିଲେହେଁ ପ୍ରକାଶନର ଯଥେଷ୍ଟ ସୁଯୋଗ ଅଭାବରୁ ଏଠାକାର ପ୍ରତିଭା ଉପଯୁକ୍ତ ଭାବରେ ବିକାଶ ଲାଭ କରି ପାରୁନାହିଁ । ମାତ୍ର ଏ ଅଞ୍ଚଳର ଆଦିବାସୀ ତଥା ସାଧାରଣ ଜନସମାଜ ମଧ୍ୟରେ ଆଳାପ ଆଲୋଚନାରେ ଯେଉଁ କବିତ୍ୱ ରହିଛି, ତାହା ଏମାନଙ୍କ ପ୍ରତ୍ୟକ୍ଷ ସଂପର୍କରେ ନ ଆସିଲେ କେହି ବୁଝି ପାରିବ ନାହିଁ ।

ଫୁଲବାଣୀ ଜିଲ୍ଲାର ସାହିତ୍ୟିକ ପରମ୍ପରା ତଥା ପ୍ରତିଭା ମାନଙ୍କୁ ଓଡ଼ିଶାର ବୃହତ୍ତର ପାଠକ ସମାଜ ନିକଟରେ ଉପସ୍ଥାପିତ କରିବାର ଅଭିନନ୍ଦନୀୟ ଉଦ୍ୟମ କରିଛନ୍ତି ଶ୍ରୀ ରଘୁନାଥ ରଥ ଓ ଶ୍ରୀ ବାବାଜୀ ଚରଣ ସ୍ୱାଇଁ । ଶ୍ରୀ ରଥ ନିଜେ ଜଣେ ଲେଖକ ଏବଂ ଗବେଷକ ମଧ୍ୟ । ଫୁଲବାଣୀର ଲୋକ କଥା, ଲୋକ ଗୀତ ତଥା ଲୋକ ସଂସ୍କୃତିର ଅନେକ ଅନାବିଷ୍କୃତ ଦିଗ ସଂପର୍କରେ ନିଜର ଶ୍ରମ ଓ ସାଧନାକୁ ବିନିଯୋଗ କରି ସେ ସବୁକୁ ଲୋକ ଲୋଚନକୁ ଆଣିବାର ଉଦ୍ୟମ ସେ ଅବ୍ୟାହତ ରଖିଛନ୍ତି । ସବୁଠାରୁ ଆଶ୍ଚର୍ଯ୍ୟର କଥା ହେଲା ତାଙ୍କର ବୃତ୍ତି

ସହିତ ( ବୃତ୍ତିରେ ସ୍ୱତନ୍ତ୍ର ନିରୀକ୍ଷକ ) ବିଦ୍ୟା ଚର୍ଚ୍ଚା ଓ ଗବେଷଣାର ସମ୍ପର୍କ ନ ରହିବା କଥା । ମାତ୍ର ସାହିତ୍ୟ ପ୍ରତି ଅଜଣା ଆଗ୍ରହ ଓ ଚେଷ୍ଟା ତାଙ୍କୁ ଏ ଦିଗକୁ ଟାଣି ଆଣି ପାରିଛି ।

ସେହିପରି ଶ୍ରୀ ସ୍ୱାଇଁ ହେଉଛନ୍ତି ରାଜସ୍ୱ ବିଭାଗର ଜଣେ କର୍ମଚାରୀ । ଭିନ୍ନ ଏକ ପରିବାର କର୍ମ କ୍ଳାନ୍ତ ଜୀବନରେ ମଧ୍ୟ ସେ ସାହିତ୍ୟ ସେବାରେ ବ୍ରତୀ । ଏହି ଜିଲ୍ଲାର ଜଣେ ସାହିତ୍ୟ ସଂଗଠକ ଭାବରେ ସେ ସୁପରିଚିତ । ନିଜର ବହୁ ବିଧ ସାହିତ୍ୟ କୃତି ମାଧ୍ୟମରେ ଫୁଲବାଣୀ ଜିଲ୍ଲାର ବିଭିନ୍ନ ସ୍ଥାନ, ପାରିପାର୍ଶ୍ୱିକ ପରିସ୍ଥିତି ଓ ଲୋକ ସଂସ୍କୃତି ସମ୍ପର୍କରେ ମଧ୍ୟ ବିଭିନ୍ନ ତଥ୍ୟ ସେ ପାଠକ ସମାଜ ସମ୍ମୁଖରେ ଉପସ୍ଥାପିତ କରିଛନ୍ତି ।

ଆମ ଓଡ଼ିଶାର ସାହିତ୍ୟିକ ପାଣି ପାଗ ଯାହା ସେଥିରେ ଜଣେ ଲେଖକ ଅନ୍ୟ ଜଣେ ସମଧର୍ମୀ ଲେଖକର ସୃଷ୍ଟି ଓ ସାଧନାକୁ ଶୁଭ ଦୃଷ୍ଟିରେ ଦେଖିବା ଏକ ବିରଳ ଘଟଣା । ଈର୍ଷା ଓ ଅସୂୟା ଭିତରେ ଆମର ଅଧିକାଂଶ ଲେଖକ ଅହରହ ସନ୍ତୁଳ ହେଉ ଥାଆନ୍ତି । ମାତ୍ର ଶ୍ରୀ ରଥ ଓ ଶ୍ରୀ ସ୍ୱାଇଁ ଏମାନଙ୍କ ମଧ୍ୟରେ ଆଶ୍ଚର୍ଯ୍ୟ ସୁନ୍ଦର ବ୍ୟତିକ୍ରମ । ତା ନ ହୋଇଥିଲେ ଛୋଟଠାରୁ ବଡ ପର୍ଯ୍ୟନ୍ତ ବୟସ ପଦ ପଦବୀ ନିର୍ବିଶେଷରେ ସମସ୍ତ ସାରସ୍ୱତ ସାଧକ ମାନଙ୍କୁ ସେମାନେ ନିଜର ପୁସ୍ତକ ମାଧ୍ୟମରେ ଏକତ୍ର ଗୁନ୍ଥିବାର ପ୍ରୟାସ କରି ନ ଥାଆନ୍ତେ । କେବଳ ଲେଖକ ମାନଙ୍କ ପରିଚୟ ନୁହେଁ; ଫୁଲବାଣୀରୁ ଏକଦା ପ୍ରକାଶ ପାଉଥିବା ଓ ବର୍ତ୍ତମାନ ପ୍ରକାଶ ପାଉଥିବା ପତ୍ର ପତ୍ରିକା ମାନଙ୍କର ଇତିବୃତ୍ତି ମଧ୍ୟ ସେମାନେ ଏଥି ସହିତ ସଂଯୋଜନା କରିଛନ୍ତି ।

ଓଡ଼ିଶାର ଏଭଳି ଅନ୍ୟ କୌଣସି ଜିଲ୍ଲାକୁ ନେଇ ପତ୍ର ପତ୍ରିକା ଓ ଲେଖକ ପରିଚୟ ପୁସ୍ତକ ଏହା ପୂର୍ବରୁ ପ୍ରକାଶିତ ହୋଇଛି କି ନାହିଁ, ମୋତେ ଜଣାନାହିଁ । ମାତ୍ର ଏ ଦିଗରେ ଏହି ଦୁଇ ଲେଖକଙ୍କ ( ଶ୍ରୀ ରଥ ଓ ଶ୍ରୀ ସ୍ୱାଇଁ ) ପୁସ୍ତକ ଅନ୍ୟ ଜିଲ୍ଲାର ଉଦ୍ୟମୀ ଲେଖକ ତଥା ସଂପାଦକ ମାନଙ୍କୁ ଅନୁରୂପ ପୁସ୍ତକ ପ୍ରକାଶନ ପାଇଁ ଯେ, ଅନୁପ୍ରେରିତ କରିବ ଏଥିରେ କିଛି ସନ୍ଦେହ ନାହିଁ । ଭବିଷ୍ୟତର ସାହିତ୍ୟ ଗବେଷକ ମାନଙ୍କ ଲାଗି ଏଭଳି ପୁସ୍ତକର ଉପାଦେୟତାକୁ ଅସ୍ୱୀକାର କରାଯାଇ ପାରିବ ନାହିଁ ।

ମୋତେ ସେମାନଙ୍କର ପୁସ୍ତକର ମୁଖବନ୍ଧ ଲେଖିବାକୁ କହିଥିବାରୁ ଶ୍ରୀ ସାଇଁ ବାବୁ ସେମାନଙ୍କର ସ୍ନେହ ଓ ସହୃଦୟତାରେ କିଣି ନେଇଛନ୍ତି । ଫୁଲବାଣୀର କୌଣସି ଏକ ସାହିତ୍ୟ ସଂଧ୍ୟାରେ ସେମାନଙ୍କ ସହିତ ପ୍ରଥମ ସାକ୍ଷାତ ଓ ସଂପର୍କ । ସେହି ସଂକ୍ଷିପ୍ତ ସଂପର୍କରୁହିଁ ମୋର ସେମାନଙ୍କ ପୁସ୍ତକ ଭିତରକୁ ଅନୁପ୍ରବେଶ । ପ୍ରତ୍ୟେକ ପତ୍ର ପତ୍ରିକା ତଥା ଲେଖକ ମେଳର ମୂଳକଥା ହେଲା ସଖ୍ୟ ଓ ସଂପର୍କ ସ୍ଥାପନା "ଫୁଲବାଣୀ ଜିଲ୍ଲାର ପତ୍ର ପତ୍ରିକା ଓ ଲେଖକ ପରିଚୟ" ପୁସ୍ତକଟି ଓଡ଼ିଶାର ସାହିତ୍ୟିକ ମାନଙ୍କ ଲାଗି ନିଶ୍ଚିତ ଭାବେ ଏକ ସ୍ମରଣୀୟ ସଂଯୋଜକ ହୋଇ ରହିବ । ମୁଁ ଶୁଭ ମନାଉଛି । ସେମାନଙ୍କର ଏଭଳି ସାଧୁ ସାହିତ୍ୟିକ ଉଦ୍ୟମରେ ପୂର୍ଣ୍ଣଚ୍ଛେଦ ନ ପଡୁ ।

କୌଣସି ସାଧୁ ଉଦ୍ୟମ ଅନ୍ୟ ସହଧର୍ମୀର ବନ୍ଧୁର ସହଯୋଗ ଅଭାବରେ ସଫଳ ହୋଇପାରେ ନାହିଁ । ବଡ଼ ଆନନ୍ଦର କଥା ଏମାନଙ୍କ ସହ ବୌଦ୍ଧର ଜଣା ଶୁଣା ଆଡ଼ଭୋକେଟ୍ ଶ୍ରୀ ଦୀନବନ୍ଧୁ ହୋତା ବିଭିନ୍ନ ଦିଗରୁ ପୂର୍ଣ୍ଣପ୍ରାଣରେ ସହଯୋଗ କରି ପୁସ୍ତକ ପ୍ରକାଶନର ଉଦ୍ୟମକୁ ସଫଳ ରୂପ ଦେଇଛନ୍ତି । ଶ୍ରୀ ହୋତା ଏକାଧାରରେ ଜଣେ ସାହିତ୍ୟିକ, ସଂଗଠକ ବୋଲି ପରିଚିତ ଥିଲେ କିନ୍ତୁ ସେ ଏହି ପୁସ୍ତକ ପ୍ରକାଶନରେ ଯେଉଁ ପ୍ରକାର ମହାନ କର୍ତ୍ତବ୍ୟ ସଂପାଦନ କରିଛନ୍ତି ସେଥିପାଇଁ ଜିଲ୍ଲାବାସୀଙ୍କ ନିକଟରେ ସେ ସବୁଦିନ ପାଇଁ ଧନ୍ୟବାଦାର୍ହ । ଏହି ମିଳିତ ସାହିତ୍ୟିକ ପ୍ରଚେଷ୍ଟା ଲାଗି ମୁଁ ପ୍ରତ୍ୟେକଙ୍କୁ ଅନ୍ତରର ଅଭିନନ୍ଦନ ଜଣାଉଛି ।

ରିଡ଼ର ସ୍ନାତକୋତ୍ତର ରାଜନୀତି ବିଜ୍ଞାନ ବିଭାଗ
ସରକାରୀ କଲେଜ, ଫୁଲବାଣୀ

# ଅଙ୍ଗନିଭା କଥା



୧୯୮୧ ମସିହାରେ ଯେତେବେଳେ ମୁଁ ଫୁଲବାଣୀ ସହରରେ ଅବସ୍ଥାନ କରୁଥିଲି ସେ ସମୟରେ କେତେକ ସାହିତ୍ୟ ପ୍ରେମୀ ବନ୍ଧୁ ମାନଙ୍କ ସହ ସାହିତ୍ୟ ସଂସ୍କୃତି କ୍ଷେତ୍ରରେ ପଛୁଆ ପଡ଼ିଥିବା ଏହି ଜିଲ୍ଲାର ସାହିତ୍ୟ କ୍ଷେତ୍ରରେ ଉନ୍ନତି ଘଟାଇବାକୁ କେତେକ ପ୍ରସ୍ତାବ ରଖିଥିଲି । ୧- ତାହା ଥିଲା ସମସ୍ତ ସାହିତ୍ୟାନୁଷ୍ଠାନ ଗୁଡ଼ିକ ମଧ୍ୟରେ ସମନ୍ୱୟ ରକ୍ଷା କରିବା, ୨- ଏହି ଜିଲ୍ଲାରୁ ଗୋଟିଏ ଉନ୍ନତ ମାନର ସାହିତ୍ୟ ପତ୍ରିକା ପ୍ରକାଶ କରି ତାକୁ ବଞ୍ଚାଇ ରଖିବାକୁ ସକଳ ପ୍ରକାର ଉଦ୍ୟମ କରିବା, ୩- ପ୍ରତି ତିନି ମାସରେ ଥରେ ଉପଖଣ୍ଡ ସଦରରେ ସେ ଅଞ୍ଚଳର ସାହିତ୍ୟିକ ମାନଙ୍କୁ ଏକତ୍ରିତ କରିବା, ୪- ଜିଲ୍ଲା ସଦର ମହକୁମାରେ ଏକ ବାର୍ଷିକ ସାହିତ୍ୟ ସଭାର ଆୟୋଜନ କରିବା, ୫- ବୟୋବୃଦ୍ଧ ସାହିତ୍ୟ ସେବକ ମାନଙ୍କୁ ସମ୍ମାନିତ କରିବା, ୬- ଜିଲ୍ଲାର ଲେଖକ ଲେଖିକା କବି କଳାକାର ମାନଙ୍କର ପରିଚୟ ପୁସ୍ତକ ପ୍ରକାଶ କରିବା । ବିଭିନ୍ନ କାରଣରୁ ଏ ସମସ୍ତ କାର୍ଯ୍ୟକାରୀ ହୋଇ ପାରିଲା ନାହିଁ । ଅନେକ ଦିନ ପରେ ବନ୍ଧୁ ରଘୁନାଥ ରଥ ଜିଲ୍ଲା ଲେଖକ ପରିଚୟ ପୁସ୍ତକ ନିମନ୍ତେ ଅନେକ ତଥ୍ୟ ସଂଗ୍ରହ କରି ମୋତେ ଜଣାଇଲେ । ତାଙ୍କୁ ସାହାଯ୍ୟ କରିବାକୁ ମୁଁ ପ୍ରତିଶ୍ରୁତି ଦେଲି ଏବଂ ଏ ପାଇଁ ଉଦ୍ୟମ କଲି । ଏହି ପୁସ୍ତକରେ ଜିଲ୍ଲାର ପତ୍ର ପତ୍ରିକା ବିଷୟରେ ସୂଚନା ଦେବାକୁ ପ୍ରସ୍ତାବ ଦେଇ ତଥ୍ୟ ମଧ୍ୟ ଯୋଗାଇଲି । ସମୟ ପାଇଲେ ଲେଖକ ମାନଙ୍କ ନିକଟରେ ପହଞ୍ଚି ତଥ୍ୟ ସଂଗ୍ରହ କଲି । ଅନେକ କ୍ଷେତ୍ରରେ ଏକାଧିକବାର

ଯିବାକୁ ହେଲା ଓ କେତେକ କ୍ଷେତ୍ରରେ ପତ୍ର ଦ୍ୱାରା ମଧ୍ୟ ତଥ୍ୟ ସଂଗ୍ରହ କରିବାକୁ ପଡ଼ିଲା । କେତେକ ବନ୍ଧୁ ପତ୍ର ପାଇଲା ମାତ୍ରେ ତଥ୍ୟ ଯୋଗାଇଲେ ତ କେତେକ ନୀରବ ରହିଲେ । ସେମାନଙ୍କ ବିଷୟରେ ଯେତିକି ଜାଣିବାର ସୁଯୋଗ ମିଳିଲା ସେତିକି ମାତ୍ର ପୁସ୍ତକରେ ସ୍ଥାନ ଦେଲୁ । କେତେକ ପତ୍ର ପତ୍ରିକାରେ ଏ ବିଷୟରେ ତଥ୍ୟ ଯୋଗାଇବା ପାଇଁ ବିଜ୍ଞାପନ ମଧ୍ୟ ଦିଆଗଲା । ବ୍ୟକ୍ତିଗତ ଭାବେ ଯେଉଁମାନଙ୍କୁ ଭେଟୁଥିଲି ସେମାନଙ୍କ ସହ ଆଲୋଚନା କରି କେତେକ ନୂତନ ଜ୍ଞାନ ପାଉଥିଲି । ତେବେ ସାଧାରଣତଃ ଅନେକ ବନ୍ଧୁ ଗୋଟିଏ ପ୍ରଶ୍ନ କରୁଥିଲେ ଲେଖକ ପରିଚୟ କ'ଣ ହେବ ? କ'ଣ ବା ଉତ୍ତର ଦିଅନ୍ତି । ଅତି ସହଜ ଭାବରେ କହୁଥିଲି ଏ ପ୍ରକାର ପ୍ରଶ୍ନର ଉତ୍ତର 'ସମୟ' ହିଁ ଦେବ ।

ପୁସ୍ତକ ନିମନ୍ତେ ତଥ୍ୟ ସଂଗ୍ରହ କାର୍ଯ୍ୟ ଶେଷ ହେଲା । ଖୁବ୍ ସମସ୍ତ ମଧ୍ୟରେ ଅତି ଆଗ୍ରହ ସହକାରେ ପାଣ୍ଡୁଲିପି ମଧ୍ୟ ପ୍ରସ୍ତୁତ କଲି । ଏବେ ଚିନ୍ତା ଆସିଲା ପୁସ୍ତକ ପ୍ରକାଶ ନିମନ୍ତେ ମୋଟା ପରିମାଣର ଟଙ୍କା ଆବଶ୍ୟକ । ଏ ଟଙ୍କା ଆସିବ କେଉଁଠୁ ? ମନରେ ଆଶଙ୍କା ଆସିଲା । ଦୁଇ ବନ୍ଧୁଙ୍କ ଏତେ ଗୁଡ଼ାଏ ପରିଶ୍ରମ କ'ଣ ବୃଥା ହୋଇଯିବ ? ବଜାରର ଜିଆଚାଣ୍ଡା କରି ( ୯ ନମ୍ବର ପ୍ରଧାନଙ୍କ ଭଣ୍ଡାରେ ) ଘନବନ୍ଧୁ ହୋତା ଓକିଲଙ୍କୁ ସବୁ ବିଷୟ ଜଣାଇଲି । ଘନବନ୍ଧୁ ବାବୁ ପାଣ୍ଡୁଲିପି ଦେଖିଲେ । କହିଲେ ଭଲ କାମ କେବେ ଅଟକି ଯାଏନା । କେତେ ଟଙ୍କା ଲାଗିବ ବୁଝି କହନ୍ତୁ । ସାଙ୍ଗେ ସାଙ୍ଗେ ପ୍ରେସବାବୁଙ୍କୁ ମୁଁ ଏ ବିଷୟ ଜଣାଇଲି । ଦୁହେଁ ଯାକେ ଜୁଲାଇ ମାସର ବର୍ଷାରେ ଭିଜି ଭିଜି କପିଲ ପ୍ରିଣ୍ଟର୍ସ ବାଲେଶ୍ୱରକୁ ଉଠିଲୁ । ପ୍ରେସ୍ ମାଲିକ ରାଜ୍ ବାବୁ ବେଶ୍ ଭଦ୍ର ଲୋକ । ସେ ମଧ୍ୟ ସାହାଯ୍ୟ କରିବାକୁ ପ୍ରତିଶ୍ରୁତି ଦେଲେ । ମନ ମଥି ଅସ୍ଥିର ଥିବା ମନରେ ଆଶାର ଝୁଙ୍କି ଟେଇଁ ଉଠିଲା । ଆନୁମାନିକ ଚାରି ହଜାର ଟଙ୍କା ଲାଗିବ ବୋଲି ଘନବନ୍ଧୁ ବାବୁଙ୍କୁ ଜଣାଇଦେଲୁ । ନିଜେ ସେ ପାଣ୍ଡୁଲିପି ଧରି ପ୍ରେସକୁ ଗଲେ । ତା ପରଦିନ ଠାରୁ ମୁଁ ଅର୍ଥ ସଂଗ୍ରହରେ ଲାଗିଲି । ପୁସ୍ତକର ପ୍ରୁଫ୍ ଦେଖିବା ଦାୟିତ୍ୱ ମୋ ଉପରେ ନ୍ୟସ୍ତ କରାଗଲା । ବହି କାମ ଆଗେଇ ଚାଲିଲା । ମଝିରେ

ମନ୍ଦିରରେ ଅର୍ଥ ସଂଗ୍ରହ ମଧ୍ୟ କରାଯାଉଥିଲା । ଆଜି ସତ କଥା ଲୁଚାଇବାକୁ ମୁଁ ଚାହେଁନା । ଅତି ବାସ୍ତବ କଥା, ଧନବନ୍ଧୁ ବାବୁଙ୍କ ବିନା ସାହାଯ୍ୟରେ ଏ ପୁସ୍ତକ ଏତେ ଶୀଘ୍ର ପ୍ରକାଶ ପାଇ ପାରି ନ ଥାନ୍ତା ବୋଲି ମୁଁ ଦୃଢ଼ ଭାବେ କହି ପାରୁଛି ।

ଏହି ପୁସ୍ତକରେ ସନ୍ନିବେଶିତ ପ୍ରତ୍ୟେକଙ୍କ ଜୀବନୀ ଗୋଟିଏ ଗୋଟିଏ ସ୍ୱୟଂ ସଂପୂର୍ଣ୍ଣ ଶହସ୍ର ପୃଷ୍ଠା ବିଶିଷ୍ଟ ପୁସ୍ତକ ହୋଇ ପାରିବାର ନିଶ୍ଚିତ ଆଶା ଅଛି କିନ୍ତୁ ଯେତିକି ଚନାକୁ ସେତିକି ପିଠା ମାତ୍ର ପରିସ୍ଥିତି ଦୃଷ୍ଟିରୁ ଯଥା ସମ୍ଭବ ସଂକ୍ଷିପ୍ତରେ ସେମାନଙ୍କୁ ଜନ ସାଧାରଣଙ୍କ ସମ୍ମୁଖରେ ପରିଚିତ କରାଇବାକୁ ପ୍ରୟାସ କରିଛୁ ।

ଭବିଷ୍ୟତରେ ଯଦି କୌଣସି ଆଗ୍ରହୀ ସାହିତ୍ୟ ପ୍ରେମୀ ବନ୍ଧୁ ବିଶେଷ ବିବରଣୀ ଦେଇ ପରିଚୟ ପୁସ୍ତକ ପ୍ରକାଶ କରିବାକୁ ନିଅନ୍ତି ପଦକ୍ଷେପ ସେଥିପାଇଁ ତାଙ୍କୁ ଧନ୍ୟବାଦ ଜଣାଇବୁ । ଏ ପୁସ୍ତକ ତୁରନ୍ତ ପ୍ରକାଶ କରିବାକୁ ଆମ ମୁଣ୍ଡ ବଥା ଠାରୁ ଆଉ ଜଣଙ୍କ ମୁଣ୍ଡ ଅଧିକ ବଥାଉଥିଲା । ସେ ହେଉଛନ୍ତି ମୋର ବଣା ଅଜା । ପୁରୀ ଜିଲ୍ଲା ନୟାଗଡ଼ ଥାନା ଉଦୟପୁର ନିବାସୀ ସଂଗ୍ରାହକ ଦାଶରଥୀ ପଟ୍ଟନାୟକ । ଏ ନେଇ ସେ ମୋତେ ଆଠ ଦଶ ଚିଠି ଦେଇଛନ୍ତି । ବଜଦର ଯଦି କେହି ସେଆଡେ ଯିବାର ଦେଖିଛି, ତାଙ୍କୁ କହିଛି ଆରେ ସେ ବାବାଜୀଙ୍କୁ କହିବୁ ବହି କାହିଁକି ଛପାଉନ । ମୋତେ ଚିଠି ଦେବ । ଏ ଅବସରରେ ସେ ଜଣାଙ୍କୁ ଏଥିପାଇଁ ଧନ୍ୟବାଦ ନ ଜଣାଇ ରହି ପାରୁନାହିଁ । ଏହି ମହାନ କାର୍ଯ୍ୟରେ ବିଭିନ୍ନ ଦିଗରୁ ସାହାଯ୍ୟ କରିଥିବା ସାମ୍ବାଦିକ ବନ୍ଧୁ ଅରୂପ କୁମାର ଜେନା, ରଜନୀକାନ୍ତ ଦାସ; ମନୋରଞ୍ଜନ ମିଶ୍ର; କପିଲ୍ ପ୍ରିଣ୍ଟେକ୍ସ୍ ର ମାଲିକ ଓ କର୍ମଚାରୀଗଣଙ୍କୁ ମଧ୍ୟ ଧନ୍ୟବାଦ ଜଣାଉଛି ।

ଯଦି କୌଣସି କ୍ଷେତ୍ରରେ କିଛି ତ୍ରୁଟି ଆମ ଅଜାଣତରେ ଘଟିଥାଏ ସେ ପାଇଁ ସମସ୍ତଙ୍କ ନିକଟରେ କ୍ଷମା ମାଗି ନେଉଛି ଏବଂ ଭବିଷ୍ୟତରେ ଏହିପରି କିଛି କାର୍ଯ୍ୟ କରିବା ପାଇଁ ସେମାନଙ୍କ ସାହାଯ୍ୟ ଲୋଡ଼ିଲେ ସାହାଯ୍ୟ ପାଇ-ବାର ଆଶା ରଖିଛି ।

ବାବାଜୀ ଚରଣ ସ୍ୱାଇଁ
ତା ୧୧-୧୧-୮୯
ଏଲ୍. ଆଇ. ସି. କ୍ୱାର୍ଟର
୨ ଆର୍. ବି. ୨ ବିଜୟ
୭୬୨ ୦୧୪, ଫୁଲବାଣୀ



# କଳିକା

ସାହିତ୍ୟ ସୃଷ୍ଟି ନିତାନ୍ତ ବ୍ୟକ୍ତିଗତ ଓ ସମ୍ପୂର୍ଣ୍ଣ ନିଜସ୍ୱ କବି ମାନଙ୍କର ଜୀବନଧାରା ମଧ୍ୟ ପରିବେଶ ପରିସ୍ଥିତି ସମସ୍ୟା ଓ ପାରିପାର୍ଶ୍ୱିକ ଅବସ୍ଥା ଦୃଷ୍ଟିରୁ ପରସ୍ପର ଠାରୁ ଭିନ୍ନ । ସାହିତ୍ୟ କ୍ଷେତ୍ରରେ ସାମଞ୍ଜସ୍ୟ ଓ ବୈଭିନ୍ନ୍ୟ ଉଭୟ ସ୍ୱାଗତ ଯୋଗ୍ୟ । ସ୍ରଷ୍ଟା ମାନଙ୍କ ପଛରେ ଗୋଡ଼େଇଲେ ସୃଷ୍ଟି ଆଗେ ଆଗେ ଧରା ଦେବ । କାରଣ ସୃଷ୍ଟି ସ୍ରଷ୍ଟାଙ୍କର ଅବର୍ତ୍ତମାନ ସହ୍ୟ କରି ପାରେ ନାହିଁ ।

ଓଡ଼ିଶାର ଅନ୍ୟାନ୍ୟ ଜିଲ୍ଲାରେ ସାହିତ୍ୟିକ ମାନେ ନିଜ ନିଜର ପରିଚୟ ଦେବାରେ ଆଗେଇ ସାଇଛନ୍ତି । ଆମେ ମଧ୍ୟ ଅନୁଧାବନ କ୍ଷମ ଏ କଥା ସୂଚେଇ ଦେବା ହେଉଛି ଆମର ଲକ୍ଷ୍ୟ ।

ଆମ ଜିଲ୍ଲାରେ କେତେ ସାହିତ୍ୟିକ କବି, ଲେଖକ, ତାତ୍ତ୍ୱିକ ଅଛନ୍ତି, ଆମେ ହଠାତ୍ କହି ପାରୁ ନ ଥିଲୁ । ଏପରିକି ଜନୈକ ଜିଲ୍ଲାପାଳ ମଧ୍ୟ ଫୁଲବାଣୀରେ କବିତା ପାଠୋତ୍ସବ ବିଷୟରେ ଏକ ମନ୍ତବ୍ୟ ପ୍ରକାଶ କରିଥିଲେ । ଏ ଜିଲ୍ଲାରେ କବି ତ ନାହାନ୍ତି, କି କବିତା ପାଠୋତ୍ସବ ହେବ ବାସ୍ତବିକ ଏ କଥାଟି ଯେ କୌଣସି ସାଧାରଣ ମନରେ ଆଘାତ ଲଗିବ କବିପ୍ରାଣ ବନ୍ଧୁ ହେମନାଥ ରଥ ଓ ବାବାଜୀ ଚରଣ ସ୍ୱାଇଁଙ୍କ ମନରେ ଏହା ଏକ ଗଭୀର ରେଖା ଟାଣିଦେଲା । ସେମାନେ ଦୃଢ଼ ସଂକଳ୍ପ, ନେଲେ ଯେ ଫୁଲବାଣୀ ଜିଲ୍ଲାର କବି ଓ ଲେଖକ ମାନଙ୍କର ଏକ ସଂକଳନ କରିବେ । ପୂର୍ବ ୨।୩ ବର୍ଷର ଅକ୍ଲାନ୍ତ ପରିଶ୍ରମ ଫଳରେ ଏହା ସାକାର ହୋଇଛି । ଯଦିଓ ସେମାନେ ଏ ଜିଲ୍ଲାର ସ୍ଥାୟୀ ବାସିନ୍ଦା ନୁହନ୍ତି ; ତଥାପି ସେମାନଙ୍କର ଏ ଜିଲ୍ଲା ପ୍ରତି ଅନୁରକ୍ତି ଉଲ୍ଲେଖ ଯୋଗ୍ୟ । ଜିଲ୍ଲାର ଏ ମୁଣ୍ଡରୁ ସେ ମୁଣ୍ଡ ପର୍ଯ୍ୟନ୍ତ ବିଭିନ୍ନ ସାହିତ୍ୟିକ ମାନଙ୍କର ବିବରଣୀ ସଂଗ୍ରହ କରିବା ଏକ କାଠିକର ପାଠ ।

ଏହି ସଙ୍କଳନରେ ଯଥା ସାଧ୍ୟ ସମସ୍ତଙ୍କର ବିଷୟରେ ଲିପିବଦ୍ଧ କରିବାର ଚେଷ୍ଟା ହୋଇଛି । ତଥାପି କେତେକ କ୍ଷେତ୍ରରେ ବାରମ୍ବାର ପତ୍ରାଳାପ କରି ନିବେଶ ହେବା ଫଳରେ ଯଥା ସମ୍ଭବ ତଥ୍ୟ ସଂଗ୍ରହକରି ଏଥିରେ ସନ୍ନିବେଶିତ କରାଯାଇଛି ।

ସବଳର ସହ ସମ୍ପାଦକ କବିବନ୍ଧୁ ଶ୍ରୀ ରାମଚନ୍ଦ୍ର ପଣ୍ଡା ୰ କବି ନେତ୍ରାନନ୍ଦ ମିଶ୍ର ଙ୍କ (୧-୮-୧୯୦୩—୧୯୮୩) ବିଷୟରେ ସଂବଳ୍ ଅକ୍ଟୋବର ୧୯୮୯ ପତ୍ରିକା ସଂଖ୍ୟା (ଚତୁର୍ଥ ବର୍ଷ) ରେ ଉଲ୍ଲେଖଯୋଗ୍ୟ ବିବରଣୀ ପ୍ରଦାନ କରିଛନ୍ତି । ତାହା ପାଠକ ମାନଙ୍କ ପାଇଁ ପ୍ରଣିଧାନ ଯୋଗ୍ୟ । ୰ ମିଶ୍ରଙ୍କର ବିଶେଷ ତଥ୍ୟ ଆମେ ପାଇ ନ ଥିବାରୁ ଏ ବହିଟିରେ ବିଶେଷ ବିବରଣୀ ପ୍ରକାଶ କରି ପାରି ନାହୁଁ ତେଣୁ କ୍ଷମାଭିକ୍ଷା କରୁଛୁ ।

୰ ଅର୍ଜୁନ ପାଣ୍ଡି (୮-୩-୧୯୦୧--୧୮-୪-୧୯୬୨) ମଧ୍ୟ ୰ ମିଶ୍ରଙ୍କର ସମସାମୟିକ କବି । ସେ ବଉଦ ରାଜାଙ୍କର ଜଗଦୀଶ ପ୍ରେସର ମେନେଜର ଥିଲେ । ସେ 'ମନୋରଞ୍ଜନ କୋଇଲି' 'ମୋ କାଳିଆ କାହ୍ନୁ' 'ଦଣ୍ଡୁଆ ରାଇ' ଓ 'ଗୌରବ ଭୂଷଣ' ପ୍ରଭୃତି ଅନେକ ପୁସ୍ତକ ପ୍ରକାଶ କରିଛନ୍ତି । ତାହା ତତ୍‌କାଳୀନ ସମାଜରେ ବିଶେଷ ଆଦର ଲାଭ କରିଥିଲା ।

ଏତତ୍ ବ୍ୟତୀତ ବଳାସପୁରର କବି ସାଧକ କ୍ଷେତ୍ରଙ୍କ ବିଷୟରେ ଛତିଶ ସାହିତ୍ୟ ସଂସଦ (ମନମୁଣ୍ଡା) ର ମୁଖ ପତ୍ର । 'ପ୍ରବାହିକା' ରେ ମଧ୍ୟ ୧୯୭୭ରେ ପ୍ରକାଶ ପାଇଛି । ଅନୁସନ୍ଧି ପାଠକ ମାନଙ୍କ ପାଇଁ ଏହା ଏକ ଉପାଦେୟ ପତ୍ରିକା ।

ଏହାର ପ୍ରକାଶନ ପାଇଁ ଯେଉଁ ପୃଷ୍ଠପୋଷକ ମାନେ ନିଜ ନିଜର ବଦାନ୍ୟତା ସଦିଚ୍ଛା; ସହଯୋଗ, ସହାନୁଭୂତି ଓ ସହୃଦୟତା ପ୍ରକାଶ କରିଛନ୍ତି । ଆମେ ସେମାନଙ୍କ ଠାରେ ଚିରକୃତଜ୍ଞ । ସେମାନଙ୍କର ନାମୋଲ୍ଲେଖ କରି ଜମା ଖର୍ଚ୍ଚର ହିସାବ ମଧ୍ୟ ଅପର ପୃଷ୍ଠାରେ ଦର୍ଶାଇଛୁ ।

ପାଠକ ତଥା ଅନ୍ୟାନ୍ୟ ବନ୍ଧୁ ମାନଙ୍କର ଏହା କିଞ୍ଚିତ କାମରେ ଲାଗି ପାରିଲେ ଆମର ଶ୍ରମ ସାର୍ଥକ ହେବ ।

ବଉଦ
ତା ୨୦।୧୦।୮୯

ଆପଣଙ୍କର ସହଯୋଗ କର୍ମୀ
**ଦୀନବନ୍ଧୁ ହୋତା,** ଏଡ୍‌ଭୋକେଟ୍

# ଫୁଲବାଣୀ ଜିଲ୍ଲା ପତ୍ର ପତ୍ରିକା

ସାହିତ୍ୟ ସଂସ୍କୃତିର ବାହକ । ଯୁଗ ଯୁଗ ସଂସ୍କୃତିର ସ୍ୱରୂପ ସାହିତ୍ୟ ମାଧ୍ୟମରେ ପରିସ୍ଫୁଟ ହୋଇଥାଏ । ଯେଉଁ ଜାତିର ସାହିତ୍ୟ ଯେତେ ଉନ୍ନତ, ତାହାର ସଂସ୍କୃତି ମଧ୍ୟ ସମପରିମାଣରେ ଉନ୍ନତ, ଏଥିରେ ଦ୍ୱିମତ ପ୍ରକାଶ କରିବାର ଅବକାଶ ନାହିଁ । ଏଣୁ କୁହାଯାଇଅଛି ସହିତସ୍ୟ ଭାବ ସାହିତ୍ୟଂ । ଅର୍ଥାତ ଆମ ସହିତ/ସମାଜ ସହିତ/ସଂସ୍କୃତି ସହିତ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ ଥିବା ବିଷୟ ବସ୍ତୁହିଁ ସାହିତ୍ୟ ଭିତରେ ପ୍ରତିଫଳିତ ହୋଇଥାଏ ।

ବର୍ଣ୍ଣ ଅକ୍ଷରରେ ଭାଷାର ସୃଷ୍ଟି ପରେ ପରେ ହିଁ ସାହିତ୍ୟର ସୃଷ୍ଟି । ଅକ୍ଷର ଏବଂ ଲେଖନ ଉପକରଣ ଉଦ୍ଭାବନର ବହୁ ପୂର୍ବରୁ ସାହିତ୍ୟ ଲୋକ ମୁଖରେ ପ୍ରଚଳିତ ଥିଲା । ଯାହାକୁ ଆଜି ଆମେ ଲୋକ ସାହିତ୍ୟ' ଭାବରେ ଅଭିହିତ କରିଥାଉ । ଭାଷା ଥିବା ପ୍ରତ୍ୟେକ ଗୋଷ୍ଠୀ ମଧ୍ୟରେ ଏପରି 'ଲୋକ ସାହିତ୍ୟ' ର ଅଭାବ ନାହିଁ । ଗବେଷକ ମାନଙ୍କ ମତରେ ବେଦ, ଉପନିଷଦ ଓ ପୁରାଣ ଇତ୍ୟାଦି ଲୋକ ସାହିତ୍ୟ ସଂକଳନରୁ ସୃଷ୍ଟ ।

ଅକ୍ଷର ଓ ଲେଖନ ଉପକରଣ ଉଦ୍ଭାବନ ହେଲାପରେ ଲିଖିତ ଆକାରରେ ସାହିତ୍ୟ ସୃଷ୍ଟି ହେଲା । କାଗଜ ଓ ଛାପାକଳ ଉଦ୍ଭାବିତ ହେବାଯାଏ ତାଳ ପତ୍ରରେ ଲିଖିତ ସାହିତ୍ୟର ସଂରକ୍ଷଣ କରାଯାଉଥିଲା ।

ଲେଖକମାନେ ସାହିତ୍ୟ ସୃଷ୍ଟି କରି ଥାଆନ୍ତି, କିନ୍ତୁ କେତେଜଣ ବା ଅନ୍ୟ ପ୍ରକାରର ସୁଯୋଗ ପାଇଥାଆନ୍ତି ? ସେଥି ନିମିତ୍ତ ମାଧ୍ୟମଟିଏ ଆବଶ୍ୟକ । ପୁଣି ପ୍ରତି ଲେଖକ'ତ ଆର୍ଥିକ ସ୍ୱଚ୍ଛଳତା ମଧ୍ୟରେ ନାହାନ୍ତି ଯେ, ନିଜସ୍ୱ ଉଦ୍ୟମରେ ନିଜର ସୃଷ୍ଟିକୁ ବହି ଆକାରରେ ସାଧାରଣରେ ଉପସ୍ଥାପିତ କରି ପାରିବେ । ସେସବୁମାନଙ୍କ ସୃଷ୍ଟିକୁ ସାଧାରଣରେ ପହଞ୍ଚାଇବାର ଦାୟିତ୍ୱ ପତ୍ରିକାର । ସ୍ରଷ୍ଟାର ସୃଷ୍ଟିକୁ ଜନତା ଦରବାରରେ ଉପସ୍ଥାପିତ କରିବା ସଙ୍ଗେ ସଙ୍ଗେ ପୁସ୍ତକକୁ ବି ଲିପିବଦ୍ଧ କରି ଭବିଷ୍ୟତ ନିମନ୍ତେ ସଂରକ୍ଷଣ ଦାୟିତ୍ୱ ପତ୍ରିକା ବହନ କରିଥାଏ । ଏହି ଦୃଷ୍ଟିରୁ ପତ୍ରିକା ପ୍ରକାଶନର ଗୁରୁତ୍ୱ ସହଜରେ ଅନୁମେୟ ।

ପ୍ରଥମେ ଓଡ଼ିଶାରେ କଟକ ଜିଲ୍ଲା କୁଜଙ୍ଗର ମଠର ବାଉଁଶ ତାଳ ପତ୍ରରେ ପତ୍ରିକା ପ୍ରକାଶ କରିଥିବା ଜଣାଯାଏ । ସେହି ତାଳ ପତ୍ର ପତ୍ରିକା ଲଣ୍ଡନ ସଂଗ୍ରହାଳୟରେ ସଯତ୍ନେ ସଂରକ୍ଷିତ ହୋଇଥିବା ଶୁଣାଯାଏ । ଓଡ଼ିଆ ଭାଷାରେ ପ୍ରଥମ ମୁଦ୍ରିତ ପତ୍ରିକା ଜ୍ଞାନାରୁଣ ୧୮୪୯ ରେ ପ୍ରକାଶିତ ହେଲା । ଏହାପରେ ୧୮୫୬ ରେ ପ୍ରବୋଧ ଚନ୍ଦ୍ରିକା ଓ ୧୮୬୧ ରେ ଅରୁଣୋଦୟ ପ୍ରକାଶ ପାଇଲା । ଉକ୍ତ ପତ୍ରିକା ଗୁଡ଼ିକ ଖ୍ରୀଷ୍ଟ ଧର୍ମ ପ୍ରଚାର ଉଦ୍ଦେଶ୍ୟରେ ଖ୍ରୀଷ୍ଟିୟାନ ମିସନାରୀ ମାନଙ୍କ ଦ୍ୱାରା କଟକରୁ ପ୍ରକାଶିତ ହେଉଥିଲା । ପ୍ରଥମ ଓଡ଼ିଆ ସାହିତ୍ୟ ପତ୍ରିକା " ଉତ୍କଳ ଦୀପିକା " ୧୮୬୬ ରେ ଶ୍ରୀ ଗୌରୀଶଙ୍କର ରାୟଙ୍କ ସମ୍ପାଦନାରେ କଟକରୁ ଆତ୍ମ ପ୍ରକାଶ କଲା ।

ଏହାପରେ ୧୮୬୮ ରେ 'ବାଲେଶ୍ୱର ସମ୍ବାଦ ବାହିକା' ଓ 'ବୋଧଦାୟିନୀ' ୧୮୬୯ ରେ 'ଉତ୍କଳ ହିତୈଷିଣୀ' ୧୮୭୩ ରେ ଉତ୍କଳ ପୁତ୍ର ଓ ଉତ୍କଳ ଦର୍ପଣ ୧୮୭୮ ରେ 'ଉତ୍କଳ ମଧୁପ' ୧୮୮୧ ରେ 'ଉତ୍କଳ ପ୍ରଭା' ୧୮୮୨ ରେ 'ପ୍ରଜାବନ୍ଧୁ' ୧୮୮୩ ରେ ସେବକ ଓ ସଂସ୍କାରକ' ୧୮୮୫ ରେ 'ପ୍ରଦୀପ' ୧୮୮୬ ରେ 'ଶିକ୍ଷା ବନ୍ଧୁ' ଓ 'ଆଶା' ୧୮୮୭ ରେ ଓଡ଼ିଆ ନବ ସମ୍ବାଦ ୧୮୮୮ ରେ 'ଓଡ଼ିଆ ଓ ନବ ସମ୍ବାଦ' ୧୮୮୯ ରେ 'ସମ୍ବଲପୁର ହିତୈଷିଣୀ ଓ ସମାଲୋଚନା' ୧୮୯୭ ରେ ଉତ୍କଳ ସାହିତ୍ୟ ୧୯୦୦ ରେ 'ଆଲୋଚନା' ଇତ୍ୟାଦି ପ୍ରକାଶିତ ହୋଇ " ଓଡ଼ିଆ ଏକ ସ୍ୱତନ୍ତ୍ର ଭାଷା ନୟ " ବଙ୍ଗାଳୀ ମାନଙ୍କ ଉକ୍ତିର ମୁକାବିଲା କରିପାରିଥିଲା ।

ଓଡ଼ିଶାରେ ପ୍ରଥମ ଓଡ଼ିଆ ପତ୍ରିକା ପ୍ରକାଶିତ ହେଲା ବେଳକୁ କନ୍ଧମାଳରେ ଜନ୍ମ ପ୍ରାଥମିକ ବିଦ୍ୟାଳୟ ସ୍ଥାପନ କରିବା ନିମନ୍ତେ ବ୍ରିଟିଶମାନେ ଯୋଜନା କରୁଥିଲେ । ବଉଦରୁ କନ୍ଧମାଳକୁ କାଢ଼ି ନିଆଯାଇ ୧୮୫୫ ରେ ଅନୁଗୁଳ ଜିଲ୍ଲା ସହ ସାମିଲ କରାଗଲା । ବାଲିଗୁଡ଼ା ଅଞ୍ଚଳ ମାନ୍ଦ୍ରାସ ପ୍ରେସିଡେନ୍‌ସି ଅଧୀନରେ ଥିଲା । ୧୯୩୬ ରେ କନ୍ଧମାଳକୁ ଅନୁଗୁଳ ଜିଲ୍ଲାରୁ କାଢ଼ି ଆଣି ଗଞ୍ଜାମ ଜିଲ୍ଲା ସହିତ ସାମିଲ କରାଗଲା । ଏପରି ଶାସନଗତ ଅସ୍ଥିରତା ସାଙ୍ଗକୁ କନ୍ଧମାନଙ୍କ ଶିକ୍ଷା ବିରୋଧୀ ମନୋଭାବ ଫଳରେ ଶିକ୍ଷାର ପ୍ରସାର କଚ୍ଛପ ଗତିରେ ଆଗେଇଲା । ତେଣୁ ଫୁଲବାଣୀ ଜିଲ୍ଲା ପତ୍ର ପତ୍ରିକା ପ୍ରକାଶନ କ୍ଷେତ୍ରରେ ସେହି ଦୃଷ୍ଟିରୁ ପଛେଇ ଯିବା ସ୍ୱାଭାବିକ ।

ଫୁଲବାଣୀ ଜିଲ୍ଲାର ପ୍ରଥମ ଓଡ଼ିଆ ପତ୍ରିକା "ବୌଦ୍ଧ ବାର୍ତ୍ତା" ୧୯୪୫ ଅଗଷ୍ଟ ମଧ୍ୟ ଭାଗରୁ ଜଗଦୀଶ ପ୍ରେସ ମ୍ୟାନେଜର୍‌ ଶ୍ରୀ ଏନ୍‌. ମିଶ୍ର ଆଇ. ଏ. ଏଲ୍‌. ଟି ଙ୍କ ସମ୍ପାଦନାରେ ପ୍ରକାଶିତ ହେଲା । ଏହା ଏକ ପାକ୍ଷିକ ସମ୍ବାଦ ପତ୍ର ଥିଲା ।
( Report on the Administration, Boudh State 1945-46 page-72)

୨- ବୌଦ୍ଧ ବାର୍ତ୍ତା ପ୍ରକାଶନ ପୂର୍ବରୁ ବୌଦ୍ଧ ଷ୍ଟେଟର ଷ୍ଟେଟ ଗେଜେଟ ( ମାସିକ ) ଇଂରାଜୀରେ ପ୍ରକାଶ ପାଉଥିଲା । ( Vide page 72 of the Report on the Admi. Boudh state 1945-46 ) ୩- ସେହି ବର୍ଷ ( ୧୯୪୫ ) ସାପ୍ତାହିକ ସମ୍ବାଦ ଓ ସାହିତ୍ୟ ପତ୍ରିକା "ସ୍ୱାଧୀନ ବୌଦ୍ଧ ବାର୍ତ୍ତା" ସମ୍ବଲପୁର-ରେ ଲିଥୋ କରାଯାଇ ବୌଦ୍ଧରୁ ପ୍ରକାଶିତ ହେଲା । ଉକ୍ତ ପତ୍ରିକାର ସମ୍ପାଦକ 'କୃଷ୍ଣ ବନ୍ଧୁ' ଛଦ୍ମ ନାମରେ ତାହା ପ୍ରକାଶ କରୁଥିଲେ ମଧ୍ୟ ତାହାର ସମ୍ପାଦକ ୬ ପ୍ରହ୍ଲାଦ ରଣା ଥିବାର ୬ ରଣାଙ୍କ ଅପ୍ରକାଶିତ ଆତ୍ମ ଜୀବନୀରୁ ଜଣା ପଡ଼େ ।

୪- ୧୯୫୩ ମସିହାରେ ଜି: ଉଦୟଗିରିରୁ ଶ୍ରୀ ନବୀନ ଚନ୍ଦ୍ର ନାଏକଙ୍କ ସମ୍ପାଦନା-ରେ ମାସିକ ସମ୍ବାଦ ଓ ସାହିତ୍ୟ ପତ୍ରିକା 'ଅନ୍ୱେଷଣ' ପ୍ରକାଶିତ ହେଉଥିଲା ।

୫- ୧୯୫୭ ରେ ବୌଦ୍ଧରୁ ଶ୍ରୀ ଲକ୍ଷ୍ମୀ କିଶୋର ମିଶ୍ରଙ୍କ ସଂପାଦନାରେ ମାସିକ ହାତ ଲେଖା ସାହିତ୍ୟ ପତ୍ରିକା 'ସାଥୀ' ପ୍ରକାଶ ପାଉଥିଲା ।

୬- ଫୁଲବାଣୀରୁ ସାମ୍ବାଦକ ଶ୍ରୀ ନାଗର ଅକ୍ତାରଙ୍କ ସମ୍ପାଦନାରେ ସାପ୍ତାହିକ ସମ୍ବାଦ ଓ ସମାଲୋଚନା ପତ୍ରିକା 'ସଗ୍ରାମ' ୧୯୬୭ ରୁ ୧୯୬୯ ଯାଏ ପ୍ରକାଶ ପାଉଥିଲା ।

୭- ଦରଭଙ୍ଗା ଶିକ୍ଷକ ସଙ୍ଘର ମୁଖପତ୍ର ଭାବରେ ଶ୍ରୀ ଅସୀତ କୁମାର ସାହୁଙ୍କ ସମ୍ପାଦନାରେ ଅର୍ଦ୍ଧ ବାର୍ଷିକୀ ସାହିତ୍ୟ ପତ୍ରିକା ବାଣୀଦୂତର ଏକମାତ୍ର ସଂଖ୍ୟା ୧୯୬୮ ରେ ପ୍ରକାଶ ପାଇଥିଲା ।

୮- ୧୯୭୧ ରେ ଶ୍ରୀ ଯତୀନ୍ଦ୍ର କୁମାର ଦାସଙ୍କ ସଂପାଦନାରେ 'ଲୋକ ଶକ୍ତି' ସାପ୍ତାହିକ ଲଘୁ ପତ୍ରିକା (କେବଳ ସମ୍ବାଦ) ଘୁ. ଉଦୟଗିରିରୁ ପ୍ରକାଶିତ ହେଉଥିଲା ।

୯- ଫୁଲବାଣୀ ମୋହନ ଦାସ କରମଚାନ୍ଦ ସାଂସ୍କୃତିକ ପରିଷଦ ଆନୁକୂଲ୍ୟରେ ଶ୍ରୀ କୁମୁଦ ଚନ୍ଦ୍ର ମଲ୍ଲିକଙ୍କ ସମ୍ପାଦନାରେ ୧୯୭୨ ରେ ହସ୍ତ ମାସିକ ସାହିତ୍ୟ ପତ୍ରିକା 'ବନମାଳା' ପ୍ରକାଶିତ ହେଲା । ପରବର୍ତ୍ତୀ କାଳରେ ତାହାକୁ ମାସିକ ପତ୍ରିକା ରୂପେ ରୂପାନ୍ତରିତ କରାଗଲା । ଏହି ପତ୍ରିକା ଅନିୟମିତ ଭାବେ ପ୍ରକାଶ ପାଉଛି ।

୧୦- ୧୯୭୨ ରେ ଦରଭଙ୍ଗା ଠାରୁ ଶ୍ରୀ ଘନଶ୍ୟାମ ପାଣିଙ୍କ ସମ୍ପାଦନାରେ ସାମୟିକ ସାହିତ୍ୟ ପତ୍ରିକା 'ବଣମଲ୍ଲୀ' ର ଏକମାତ୍ର ସଂଖ୍ୟା ପ୍ରକାଶିତ ହୋଇଥିଲା ।

୧୧- ଶ୍ରୀ ପ୍ରଣବ କୁମାର ମଣ୍ଡଳ ଓ ରବୀନ୍ଦ୍ର ନାଥ ଦାଶଙ୍କ ସଂପାଦନାରେ ଫୁଲବାଣୀରୁ ୧୯୭୨ ରେ ସାମୟିକ ମିନି ପତ୍ରିକା 'ଆଶା' ପ୍ରକାଶିତ ହୋଇଥିଲା ।

୧୨- ସେହି ବର୍ଷ ଫୁଲବାଣୀରୁ ଶ୍ରୀ ପ୍ରସାଦ ବେଓଙ୍କ ସଂପାଦନାରେ ସାମୟିକ ସାହିତ୍ୟ ପତ୍ରିକା 'ଭଗ୍ନାଂଶ' ପ୍ରକାଶ ପାଇଥିଲା ।

୧୩- ୧୯୭୨ ରେ ଘୁ. ଉଦୟଗିରିରୁ ଶ୍ରୀ କରୁଣାକର ନାୟକଙ୍କ ସଂପାଦନାରେ ଏବଂ କାବାଳୀ ଚରଣ ସ୍ୱାଇଁଙ୍କ ସକ୍ରିୟ ସହଯୋଗରେ ହସ୍ତ ମାସିକ ସାହିତ୍ୟ ପତ୍ରିକା 'ପଲ୍ଲୀପୁଷ୍ପ' ର ଏକମାତ୍ର ସଂଖ୍ୟା ପ୍ରକାଶ ପାଇଥିଲା ।

୧୪- ବାଲିଗୁଡ଼ାରୁ ୧୯୭୩ ରେ ଶ୍ରୀ ସୁବାସ ଚନ୍ଦ୍ର ପାଢ଼ୀଙ୍କ ସଂପାଦନାରେ ସାମୟିକ ମିନି ସାହିତ୍ୟ ପତ୍ରିକା 'ବନ୍ଧୁ' ପ୍ରକାଶ ପାଇଥିଲା ।

୧୫- ସେହି ବର୍ଷ 'ଇନ୍ଦୁ' ନାମକ ଏକ ସାମୟିକ ସାହିତ୍ୟ ପତ୍ରିକା ଶ୍ରୀ ବାବାଜୀ ଚରଣ ସ୍ୱାଇଁ, ପଦ୍ମ ଚରଣ ନାୟକ, ଶଙ୍ଖଧର ଦାସ, ବ୍ରଜ କିଶୋର ପଟ୍ଟନାୟକ ଓ କଂଶାର ଷାଇଁ ମିଶ୍ରଙ୍କ ସଂପାଦନାରେ ଧୂ: ଉଦୟଗିରିରୁ ପ୍ରକାଶ ପାଇଥିଲା ।

୧୬- ବଜଡଠାରୁ 'ବଜଡ' ସାହିତ୍ୟ ପତ୍ରିକା [ପ୍ରଥମେ ଦ୍ୱିମାସିକ ଓ ପରେ ମାସିକ] ଶ୍ରୀ ପ୍ରଫୁଲ୍ଲ ମହାକୁଡ଼ଙ୍କ ସଂପାଦନାରେ ୧୯୭୭ ରୁ ଅନିୟମିତ ଭାବେ ପ୍ରକାଶ ପାଇ ଆସୁଅଛି ।

୧୭- ୧୯୭୮ ରେ ଷଣ୍ମାସିକ ଧର୍ମମୂଳକ ସାହିତ୍ୟ ପତ୍ରିକା ଭାରତୀୟ ସଂସ୍କୃତି ଓ ବିଭୂତି ଶ୍ରୀ ବନମାଳି ପଟ୍ଟନାୟକଙ୍କ ସଂପାଦନାରେ ଫୁଲବାଣୀ ଠାରୁ ପ୍ରକାଶିତ ହୋଇ କିଛି ଦିନ ଚାଲିଥିଲା ।

୧୮- ୧୯୮୦ ରେ ଶ୍ରୀ ବିବେକା ନନ୍ଦ ପାଣିଗ୍ରାହୀଙ୍କ ସଂପାଦନାରେ ଷଣ୍ମାସିକ ସାହିତ୍ୟ ପତ୍ରିକା 'ସରଣୀ' ଧୂ: ଉଦୟଗିରିରୁ ପ୍ରକାଶ ପାଇଥିଲା ।

୧୯- ଧୂ. ଉଦୟଗିରିର ସାମ୍ବାଦିକ ଶ୍ରୀ ନିରଞ୍ଜନ ମହାନ୍ତିଙ୍କ ସଂପାଦନାରେ ଦ୍ୱିମାସିକ ସାହିତ୍ୟ ପତ୍ରିକା 'ମଶାଲ' ର ଏକମାତ୍ର ସଂଖ୍ୟା ୧୯୮୧ ଜୁନ୍ ମାସରେ ପ୍ରକାଶିତ ହୋଇଥିଲା ।

୨୦- ୧୯୮୧ ସେପ୍ଟେମ୍ବର ଠାରୁ ମାସିକ ସାହିତ୍ୟ ପତ୍ରିକା 'ନିର୍ଝର' ଧୂ. ଉଦୟଗିରିରୁ ଶ୍ରୀ ବିଭୂତି ମହାନ୍ତିଙ୍କ ସଂପାଦନାରେ ପ୍ରକାଶିତ ହୋଇ କିଛିଦିନ ଚାଲିଥିଲା ।

୨୧- ଏପ୍ରିଲ ୧୯୮୧ ରୁ ଶ୍ରୀ ଯୁଗଳ କିଶୋର ଶତପଥୀଙ୍କ ସଂପାଦନାରେ ଫୁଲବାଣୀ ଯୁବ ଲେଖକ ସାମ୍ମୁଖ୍ୟର ମୁଖପତ୍ର ଷଣ୍ମାସିକ ସାହିତ୍ୟ ପତ୍ରିକା 'ଇପ୍‌ସିତା' ପ୍ରକାଶିତ ହୋଇଥିଲା । ଏହି ପତ୍ରିକାର ପରବର୍ତ୍ତୀ ସଂପାଦକ ହେଲେ ଶ୍ରୀ ଦୁର୍ଗାମାଧବ ପ୍ରହରାଜ ଓ ଡଃ କୃଷ୍ଣ ଚରଣ ବେହେରା ।

୨୨- ଫୁଲବାଣୀରୁ ସାମ୍ବାଦିକ ଶ୍ରୀ ମହାଦେବ ସାହୁଙ୍କ ସଂପାଦନାରେ ସାପ୍ତାହିକ ସମ୍ବାଦ ପତ୍ର 'ଜାଗରଣ' ଜୁନ୍ ୧୯୮୨ ଠାରୁ ପ୍ରକାଶିତ ହେଉଅଛି ।

୨୩- ନଭେମ୍ବର ୧୯୮୩ ରେ ସମ୍ବାଦ ଓ ସାହିତ୍ୟ ସାପ୍ତାହିକ ପତ୍ରିକା 'ଜନରାଜ୍ୟ' ଶ୍ରୀ ପ୍ରଫୁଲ୍ଲ ମହାକୁଡ଼ଙ୍କ ସଂପାଦନାରେ ପ୍ରକାଶିତ ହେଉଥିଲା ।

୨୪- 'ଜାଗୃତ' ସେବା ସଂସ୍ଥା ତରଫରୁ 'ଫୁଲବାଣୀ' ନାମକ ମାସିକ ପତ୍ରିକା କେବଳ ସେବା ସଂସ୍ଥା ମାନଙ୍କ କାର୍ଯ୍ୟାବଳୀ ଉପରେ ନଭେମ୍ବର ୧୯୮୪ ଠାରୁ ଫୁଲବାଣୀରୁ ପ୍ରକାଶିତ ହୋଇ ଆସୁଅଛି ଓ ଏହା ସେବା ସଂସ୍ଥା ମାନଙ୍କର "କେବଳ ଘରୋଇ ବ୍ୟବହାର ନିମନ୍ତେ ଉଦ୍ଦିଷ୍ଟ"।

୨୫- ୧୯୮୫ ମୋତୃପ୍ରକାଶନର ସାମ୍ବାଦିକ ଶ୍ରୀ ନିରଞ୍ଜନ ମହାନ୍ତିଙ୍କ ସଂପାଦନାରେ ଜି: ଉଦୟଗିରି ଠାରୁ 'ଗଣଚେତନା' ସାହିତ୍ୟ ପତ୍ରିକାର ଏକମାତ୍ର ସଂଖ୍ୟା ପ୍ରକାଶିତ ହୋଇଥିଲା ।

୨୬- ୧୯୮୫ ରୁ ଡଃ ଶ୍ରୀଶ ପଟ୍ଟନାୟକଙ୍କ ସଂପାଦନାରେ 'ଫୁଲ' ମାସିକ ମିନି ସାହିତ୍ୟ ପତ୍ରିକା ଅନ୍ତର୍ଦେଶୀୟ ପତ୍ର ଆକାରରେ ପ୍ରକାଶିତ ହେଉଥିଲା । ସଂପାଦକଙ୍କ ସ୍ଥାନାନ୍ତରିତ ଯୋଗୁ ଏହି ପତ୍ରିକା ବର୍ତ୍ତମାନ ଭୁବନେଶ୍ୱରରୁ ପ୍ରକାଶ ପାଉଛି ।

୨୭- ୧୯୮୫ ସେପ୍ଟେମ୍ବର ଠାରୁ ଶ୍ରୀ ବାସୁଦେବ ମିଶ୍ରଙ୍କ ସଂପାଦନାରେ ଜି. ଉଦୟଗିରିରୁ 'ବାଣୀ' ମାସିକ ସାହିତ୍ୟ ପତ୍ରିକା ପ୍ରକାଶିତ ହେଉଥିଲା ।

୨୮- ଶ୍ରୀ ଲିଙ୍ଗରାଜ ଦଳବେହେରାଙ୍କ ସଂପାଦନାରେ ଏକମାତ୍ର କନ୍ଧ ଶିଶୁ ପତ୍ରିକା 'ଅଭିମନ୍ୟୁ' ୧୯୮୫ ରେ ଫୁଲବାଣୀରୁ ଏକମାତ୍ର ସଂଖ୍ୟା ପ୍ରକାଶିତ ହୋଇଥିଲା ।

୨୯- ଜୁନ୍ ୧୯୮୬ ଠାରୁ ଶ୍ରୀ ରବୀନ୍ଦ୍ର ନାଥ ମିଶ୍ରଙ୍କ ସଂପାଦନାରେ ମାସିକ ସାହିତ୍ୟ ପତ୍ରିକା 'ସଂବିତ୍' ଫୁଲବାଣୀରୁ ପ୍ରକାଶିତ ହୋଇ ଆସୁଅଛି ।

୩୦- ସାମ୍ବାଦିକ ଶ୍ରୀ ସୌରେନ୍ଦ୍ର କିଶୋର ଷଡଙ୍ଗୀଙ୍କ ସଂପାଦନାରେ ୧୪ । ୬ । ୧୯୮୬ ଠାରୁ ପାକ୍ଷିକ ସମ୍ବାଦ ଓ ସାହିତ୍ୟ ପତ୍ରିକା 'ବିଶ୍ୱବାର୍ତ୍ତା' ପ୍ରକାଶିତ ହୋଇ ଆସୁଛି ।

୩୧- ନଭେମ୍ବର ୧୯୮୬ ଠାରୁ ଶ୍ରୀ ବନମାଳୀ ପାଣିଗ୍ରାହୀଙ୍କ ସଂପାଦନାରେ ବଉଦରୁ ପାକ୍ଷିକ ସାହିତ୍ୟ ଓ ସମ୍ବାଦ ପତ୍ରିକା 'ମର୍ମ' ପ୍ରକାଶିତ ହୋଇ ଅଛୁଛି ।

୩୨- ନଭେମ୍ବର ୧୯୮୭ ରୁ ଶ୍ରୀ କାହ୍ନୁ ଚରଣ ସ୍ୱାଇଁଙ୍କ ସଂପାଦନାରେ ପ୍ରଥମ ଥର ପାଇଁ ନାରଙ୍ଗବାଡ଼ିରୁ 'ଝରଣା' ମାସିକ ସାହିତ୍ୟ ପତ୍ରିକା ପ୍ରକାଶ ପାଇ ଆସୁଅଛି ।

୩୩- ଆଦିବାସୀ ଓ ହରିଜନ ଉନ୍ନୟନ ସମସ୍ୟା ଉପରେ ଆଧାରିତ ସମ୍ବାଦ ଓ ସମସ୍ୟାବଳୀ ପରିବେଷଣ ନିମନ୍ତେ ଗ୍ରାମ୍ୟ ଉନ୍ନୟନ ସଂସ୍ଥା ଫୁଲବାଣୀ ତରଫରୁ ୧୯୮୭ ଜାନୁଆରୀ ଠାରୁ "ଆମ ଫୁଲବାଣୀ" ନାମକ ପତ୍ରିକା ପ୍ରକାଶ ପାଉଥିଲା । ତାହା "ସିମିତ ପ୍ରସାରଣ ନିମନ୍ତେ ଉଦ୍ଦିଷ୍ଟ" ଥିଲା ।

୩୪- ସାଧାରଣ ଜ୍ଞାନ ଉପରେ ଆଧାରିତ ଏକମାତ୍ର ମାସିକ ପତ୍ରିକା 'ଜ୍ଞାନଝର' ଶ୍ରୀ ହରେକୃଷ୍ଣ ଆଚାର୍ଯ୍ୟଙ୍କ ସଂପାଦନାରେ ୧୯୮୬ ଫେବୃୟାରୀ ଠାରୁ ଫୁଲବାଣୀରୁ ପ୍ରକାଶିତ ହେଉଛି ।

୩୫- ମାସିକ ସାହିତ୍ୟ ପତ୍ରିକା 'ଅରଣ୍ୟ' ୧।୧।୧୯୮୮ ଠାରୁ ସୌଜନ୍ୟ ସଂପାଦକ ଶ୍ରୀ ଗୋପୀନାଥ ରଥ ଓ ସଂପାଦକ ଶ୍ରୀ ଧ୍ରୁବଚରଣ ବିଶ୍ୱାଳଙ୍କ ସଂପାଦନାରେ ବାଲିଗୁଡ଼ାରୁ ପ୍ରକାଶିତ ହେଉଥିଲା ।

୩୬- ୧୯୮୯ ମାର୍ଚ୍ଚ ମାସ ଠାରୁ ଜି. ଉଦୟଗିରିରୁ ଶ୍ରୀ ପତିତପାବନ ସାହୁଙ୍କ ସଂପାଦନାରେ 'ଗଣମୁକ୍ତି' ସମ୍ବାଦ ଓ ସାହିତ୍ୟ ପତ୍ରିକା ପ୍ରକାଶ ପାଉଛି ।
ଉପରୋକ୍ତ ପତ୍ର ପତ୍ରିକା ବ୍ୟତୀତ ଅନ୍ୟ କେତେକ ପତ୍ର ପତ୍ରିକା ପ୍ରଭୃତି ଆମର ଦୃଷ୍ଟି ଅଗୋଚରରେ ରହିଯାଇ ପାରିଥାଏ । ଉକ୍ତ ପତ୍ରିକା ଗୁଡ଼ିକ ଫୁଲବାଣୀ ଜିଲ୍ଲାର ସାହିତ୍ୟ ଅଗ୍ରଗତିରେ ସହାୟକ ହୋଇ ଆସିଛନ୍ତି ।

ଏତଦ୍ ବ୍ୟତୀତ ସ୍କୁଲ ଓ କଲେଜ ମାନଙ୍କର ମୁଖପତ୍ର ଗୁଡ଼ିକ ସାହିତ୍ୟର ଅଗ୍ରଗତିରେ ମଧ୍ୟ ବିଶିଷ୍ଟ ଭୂମିକା ଗ୍ରହଣ କରିଛନ୍ତି । ସେମାନଙ୍କ ମଧ୍ୟରେ ଫୁଲବାଣୀ ସରକାରୀ ମହାବିଦ୍ୟାଳୟର 'ଆରଣ୍ୟକ' ଓ 'ସାଲୁଙ୍କୀ' ଫୁଲବାଣୀ ଏ.ଜେ.ଓ. ଉଚ୍ଚ ବିଦ୍ୟାଳୟର ମୁଖପତ୍ର, ବଉଦ ଜେ. ଡ଼ି. ହାଇସ୍କୁଲ-ର 'ସ୍ୱରଣ' ଜି. ଉଦୟଗିରି ନବାବ୍ ହାଇସ୍କୁଲର 'ଧରଣୀ' ଜି. ଉଦୟଗିରି ବାଳିକା ଉଚ୍ଚ ବିଦ୍ୟାଳୟର 'ପ୍ରଭାତ' ଜି. ଉଦୟଗିରି କଳିଙ୍ଗ ମହାବିଦ୍ୟାଳୟର 'କଳିଙ୍ଗ ପ୍ରଭା' ଓ 'ତପୋବନ' ଫୁଲବାଣୀ ବାଳିକା

ଉଚ୍ଚ ବିଦ୍ୟାଳୟର 'ବନାନୀ' ଟିକାବାଲି ଉଚ୍ଚ ବିଦ୍ୟାଳୟର ବନାନୀକା' ଟିକାବାଲି ଶିକ୍ଷକ ପ୍ରଶିକ୍ଷଣ ବିଦ୍ୟାଳୟର 'ଜନପ୍ରଭା' ଓ ଜଳଙ୍ଗା ଡ଼.ଏ ଡ଼. ଶିକ୍ଷକ ପ୍ରଶିକ୍ଷଣ ବିଦ୍ୟାଳୟର ମୁଖପତ୍ର 'ସମ୍ବଳ' ବହୁଦା ପଞ୍ଚାୟତ କଲେଜ ମାଗାଜିନ' ଉଲ୍ଲେଖ ଯୋଗ୍ୟ ।

ଫୁଲବାଣୀ ଜିଲ୍ଲାରେ ପ୍ରକାଶ ପାଉଥିବା ପତ୍ରିକା ଗୁଡ଼ିକ ମଧ୍ୟରୁ କୌଣସି ଗୋଟିଏ ବି ନିୟମିତ ପ୍ରକାଶିତ ହୋଇପାରି ନାହିଁ । ଏହାର ଅର୍ଥ ନୁହେଁ ଯେ ଫୁଲବାଣୀ ଜିଲ୍ଲାରେ ଲେଖକ କିମ୍ବା ଲେଖାର ଅଭାବ ରହିଛି । ଆର୍ଥିକ ଅନଟନ ନିୟମିତ ପତ୍ରିକା ପ୍ରକାଶନରେ ପ୍ରତିବନ୍ଧକ ହେଉଥିବାର କୈଫିୟତ ମିଳିଥାଏ । ହୁଏତ କେତେକାଂଶରେ ଏହା ଠିକ୍, କିନ୍ତୁ ସଂପୂର୍ଣ୍ଣ ସତ୍ୟ ନୁହେଁ । ତାହାର ମୁଖ୍ୟ କାରଣ ହେଲା ମନୋବଳର ଅଭାବ ଏବଂ ସର୍ବୋପରି ଲେଖକମାନଙ୍କ ମଧ୍ୟରେ ଏକତା ଓ ସୌହାର୍ଦ୍ଦ୍ୟର ଘୋର ଅଭାବ । କେତେକ କ୍ଷେତ୍ରରେ ପ୍ରବଞ୍ଚନା ଓ ପ୍ରତାରଣା ମଧ୍ୟ ପତ୍ରିକା ପ୍ରକାଶନ ରାସ୍ତାରେ କଣ୍ଟା ବିଛେଇବାର ଦୃଷ୍ଟାନ୍ତ ରହିଛି । ବିଦ୍ୟାଳୟ ଓ ମହାବିଦ୍ୟାଳୟ ଗୁଡ଼ିକର ପତ୍ରିକା ପ୍ରକାଶନ ନିମନ୍ତେ ଆର୍ଥିକ ଅଭାବର ସମ୍ମୁଖୀନ ହେବାର କାରଣ ନ ଥିଲେ ମଧ୍ୟ ପ୍ରଚେଷ୍ଟାର ଅଭାବ ଯୋଗୁଁ ପତ୍ରିକା ଗୁଡ଼ିକ ନିୟମିତ ପ୍ରକାଶିତ ହୋଇ ପାରୁ ନ ଥିବା ସମ୍ଭବ । ଏଣୁ ସଂପାଦକ / ଲେଖକ ଓ ସାହିତ୍ୟିକ ତଥା ଶିକ୍ଷାନୁଷ୍ଠାନର ମୁଖ୍ୟମାନେ ଐକାନ୍ତିକ ଚେଷ୍ଟା ଓ ନିଷ୍ଠା ଦ୍ୱାରା ଏହି ସ୍ଥାଣୁତ୍ୱକୁ ଦୂରେଇ ଦେବା ପାଇଁ ଆମର ଅନୁରୋଧ ।



# ବୌଦ ରାଜବଂଶର ସାହିତ୍ୟ କୃତୀ

ରାଜ ପୃଷ୍ଠ ପୋଷକତାରେ ଅତୀତରେ ବହୁ ଉନ୍ନତ ସାହିତ୍ୟ କୃତି ସୃଷ୍ଟି ହୋଇଥିଲା । ପ୍ରାୟ ସମସ୍ତ ରାଜଦରବାରରେ ପଣ୍ଡିତ ସଭାଟିଏ ରହୁଥିଲା । ଅବସର ବିନୋଦନ ତଥା ମନୋରଞ୍ଜନ ନିମନ୍ତେ ସେଠାରେ ସାହିତ୍ୟ ଆଲୋଚନା କରାଯାଉଥିଲା ଓ ସାହିତ୍ୟ ସୃଷ୍ଟି ପାଇଁ ପୁରସ୍କାର ଓ ଉପଢୌକନ ଦେଇ ଉତ୍ସାହିତ କରାଯାଉଥିଲା । କେତେକ ରାଜା ମଧ୍ୟ ପଣ୍ଡିତ ଦଳ ଦ୍ୱାରା ପ୍ରଭାବିତ ହୋଇ ନିଜେ ବି କାବ୍ୟ କବିତା ରଚନା କରିବାରେ ମନୋନିବେଶ କରିଥିଲେ । ରାଜ ଆନୁଗତ୍ୟର ନିଦର୍ଶନ ସ୍ୱରୂପ କେତେକ କବି ମଧ୍ୟ କାବ୍ୟ ରଚନା କରି ରାଜାଙ୍କ ନାମରେ ଭଣିତା କରିଥିବାର ଦୃଷ୍ଟାନ୍ତ ବି ବିରଳ ନୁହେଁ ।

ବୌଦ ରାଜବଂଶରେ ଭଞ୍ଜ ବଂଶୀୟ ରାଜାମାନେ ରାଜତ୍ୱ କରୁଥିଲେ । ସେମାନଙ୍କ ମଧ୍ୟରୁ କେତେ ଜଣ ନରପତି ମଧ୍ୟ କାବ୍ୟ କବିତା ରଚନା କରିଥିବା ଜଣାଯାଏ ।

୧) ବୌଦ ନରପତି ଗୋବିନ୍ଦ ଭଞ୍ଜଙ୍କ ପୁତ୍ର ନାରାୟଣ ଭଞ୍ଜ [୧୫୬୫ ଖ୍ରୀ. ଅ] ରୁକ୍ମିଣୀ ପରିଣୟ କାବ୍ୟର ପ୍ରଣେତା ବୋଲି ଗ୍ରନ୍ଥ ଭଣିତାରୁ ଜଣାଯାଏ । ରୁକ୍ମିଣୀ ଜନ୍ମ ଠାରୁ ଦ୍ୱାରକାଧିପତି ଶ୍ରୀକୃଷ୍ଣଙ୍କ ସହିତ ବିବାହ ପର୍ଯ୍ୟନ୍ତ ପୁରାଣ ବିଷୟ ମାତ୍ର ଛଅ ଗୋଟି ସର୍ଗ ମଧ୍ୟରେ ବର୍ଣ୍ଣିତ ହୋଇଛି । ପ୍ରତ୍ୟେକ ସର୍ଗରେ ଦୁଇଟି କରି ଗୀତ ଓ ପ୍ରତ୍ୟେକ ଗୀତ ଅଭିନବ ଗୀତ ଗୋବିନ୍ଦ ପରି ସ୍ୱରେଟି ପଦରେ ବିଭକ୍ତ ହୋଇଛି । ଗୀତ ଗୁଡ଼ିକରେ ବିଭିନ୍ନ ବାରଟି ରାଗ ବ୍ୟବହୃତ ହୋଇଛି । ତନ୍ମଧ୍ୟରୁ ଗୀତ ଗୋବିନ୍ଦ ଓ ଅଭିନବ ଗୀତ ଗୋବିନ୍ଦ ପ୍ରଯୁକ୍ତ ରାଗ ବ୍ୟତୀତ କାମୋଦୀ, ଗୌଡ଼ ଓ ଦକ୍ଷିଣଶ୍ରୀ ନାମରେ ତିନୋଟି ନୂତନ ରାଗ ସନ୍ନିବେଶିତ କରାଯାଇଛି । ଏଥିରେ ବିଭିନ୍ନ ବୃତ୍ତର ପଚାଶଟି ଶ୍ଳୋକ ଅଛି । ରୁକ୍ମିଣୀ ସମ୍ଭବ; ବୈଦର୍ଭୀ, ପୂର୍ବାନୁରାଗ, ବିବାହୋଦଯୋଗ, ଦୂତ ସଂଭାଷଣ, ଦ୍ୱିଜଦୂତ ଓ ରୁକ୍ମିଣୀ ପରିଣୟ ବିଷୟକୁ ନେଇ ସର୍ଗ ବିଭାଗ କରାଯାଇଛି ।

ଆକାର ଦୃଷ୍ଟିରୁ ଅତି କ୍ଷୁଦ୍ର ହୋଇଥିଲେ ମଧ୍ୟ କାବ୍ୟଟିର ରସାଳ ସଙ୍ଗୀତ ଓ ଶ୍ଳୋକାବଳୀର ମାଧୁର୍ଯ୍ୟ ଅବିସ୍ମରଣୀୟ ( ଓଡ଼ିଶାର ସାଂସ୍କୃତିକ ଇତିହାସ ପୃ: ୨୦୩ କଲଚୁରାଲ ଫୋରମ; ଭୁବନେଶ୍ୱର ) ।

୨) ବୌଦ ନରେଶ ଚନ୍ଦ୍ର ଶେଖର ଭଞ୍ଜ [ ୧୭୨୫ ରୁ ୧୭୬୦ ଖ୍ରୀ. ଅ: ] ପ୍ରେମମଞ୍ଜରୀ ନାମରେ ଏକ କାଳ୍ପନିକ କାବ୍ୟ ରଚନା କରିଥିବା ଜଣାଯାଏ । [ଓଡ଼ିଆ ସାହିତ୍ୟର ସଂକ୍ଷିପ୍ତ ପରିଚୟ ପୃ. ୧୭୬ ଷଷ୍ଠ ସଂସ୍କରଣ ୧୯୮୫ ]

୩) ବଉଦ ନୃପତି ଯୁଗ ଭଞ୍ଜ ଦଶ ପୋଇ ଓ ବାର ପୋଇ ନାମକ ଦୁଇଟି ଖଣ୍ଡ କାବ୍ୟ ଲେଖିଥିବା ଆଲୋଚକ ଶ୍ରୀ ପ୍ରଭାସ ରଞ୍ଜନ ମହାପାତ୍ର ପ୍ରମାଣ କରନ୍ତି । ଉପରୋକ୍ତ ଦୁଇ କାବ୍ୟ ଯୁବ ଭଞ୍ଜ ଛଦ୍ମ ନାମରେ ଉପେନ୍ଦ୍ର ଭଞ୍ଜ ରଚନା କରିଥିବା ଶ୍ରୀ ଓ: ସି. ଗାଙ୍ଗୁଲି, ଶ୍ରୀ ଚିନ୍ତାମଣି ଆଚାର୍ଯ୍ୟ, ପଣ୍ଡିତ ନୀଳମଣି ମିଶ୍ର ମତବ୍ୟକ୍ତ କରିଥିଲେ ମଧ୍ୟ ଅନ୍ୟ କେତେକ ପ୍ରମାଣ ବଳରେ ଶ୍ରୀ ମହାପାତ୍ର ଉକ୍ତ ଦୁଇଟି କାବ୍ୟ ବଉଦ ନରେଶ ଯୁବଭଞ୍ଜ ବା ଯୁଗଭଞ୍ଜଙ୍କ କୃତି ବୋଲି ଦାବି କରନ୍ତି । ଯୁଗଭଞ୍ଜ ଉପେନ୍ଦ୍ର ଭଞ୍ଜଙ୍କ ସମସାମୟିକ ଥିବା ଜଣାଯାଏ । ( ଆସନ୍ତା କାଲି, ଜୁଲାଇ ୧୯୮୭ ପୃ: ୪୭—୫୨ ) ଯୁବଭଞ୍ଜ (ଯୁଗଭଞ୍ଜ) ଏକ ଛଦ୍ମ ନାମ କି ? ଶ୍ରୀ ପ୍ରଭାସ ରଞ୍ଜନ ମହାପାତ୍ର ।

୪) ବୌଦ ନରପତି ଯୁଗଭଞ୍ଜଙ୍କ ପୁତ୍ର ନୀଳାମ୍ବର ଭଞ୍ଜ କୃଷ୍ଣଲୀଳାମୃତ କାବ୍ୟର ପ୍ରଣେତା ବୋଲି ଉକ୍ତ କାବ୍ୟର ଭଣିତାରୁ ଜଣାଯାଏ । ଏହି କାବ୍ୟ ଉପେନ୍ଦ୍ର ଭଞ୍ଜଙ୍କ ଏକ ଦଣ୍ଡି କାବ୍ୟ ଥିବା ଆଲୋଚକ ମାନେ ମତ ଦିଅନ୍ତି । [ଆସନ୍ତା କାଲି ଜୁଲାଇ ୧୯୮୭ ପୃ: ୫୦-୫୧]

୫) ଯୋଗୀନ୍ଦ୍ରଦେବ ବୌଦ ରାଜବଂଶର ୪୩ ତମ ରାଜା । ସେ ଦମୟନ୍ତୀଶ ବିଳାସ ନାମରେ ଏକ କାବ୍ୟ ରଚନା କରିଥିବା ସମ୍ବନ୍ଧରେ ଏଇ ଲେଖକ ଖଡ଼ିଆଳ ଯୁବରାଜ ଶ୍ରୀଜଣମିତ୍ର ପ୍ରସାଦ ସିଂହଦେଓଙ୍କ ମତ ଆଲୋଚନାରୁ ଜାଣିବାକୁ ପାଇଛି । ଏହା ବ୍ୟତୀତ ଖଡ଼ିଆଳ ଯୁବରାଜଙ୍କ ନିକଟରେ ଯୋଗୀନ୍ଦ୍ର

ଦେବଙ୍କ ପ୍ରଣୀତ "ବନ୍ଧଭୂଷଣ ସଙ୍ଗୀତ ଅନ୍ତର୍ଲିପି" ନାମକ ଗ୍ରନ୍ଥର କାଗଜରେ ଲିଖିତ ଏକ ପାଣ୍ଡୁଲିପି ଏହି ଲେଖକ ଦେଖିବାକୁ ପାଇଥିଲା । ଉକ୍ତ ଗ୍ରନ୍ଥ ଏ ଯାବତ ଅପ୍ରକାଶିତ । ଉକ୍ତ ଗ୍ରନ୍ଥଟି ଉପେନ୍ଦ୍ର ଭଞ୍ଜଙ୍କ ଛନ୍ଦ କାବ୍ୟ ବନ୍ଧୋଦୟ ଗ୍ରନ୍ଥାନୁରୂପ ଏକ କ୍ଷୁଦ୍ର ଗ୍ରନ୍ଥ ଅଟେ ।

୭) ରାଣୀ ସାହେବା ଶ୍ରୀମତୀ ସତ୍ୟବତୀ ଦେବୀଙ୍କ ନିଜ ଲେଖା ସହ ଅନ୍ୟ କେତେକ ଲେଖା ୧୯୫୭ ରେ ବୌଦ୍ଧାଧିପତି ରାଜା ଶ୍ରୀମାନ ନାରାୟଣ ପ୍ରସାଦ ଦେବଙ୍କ ଉଦ୍ୟୋଗରେ "ଶୋକାଶ୍ରୁ ପୁଷ୍ପାଞ୍ଜଳି" ବନ୍ଧ ପ୍ରକାଶିତ ।

ଉପରୋକ୍ତ ଆଲୋଚନାରୁ ଜଣାପଡ଼େ ଯେ ବୌଦ୍ଧ ରାଜବଂଶର ମଧ୍ୟ ଓଡ଼ିଆ ସାହିତ୍ୟକୁ ଦାନ କମ ନୁହେଁ ।

ରଘୁନାଥ ରଥ



## ଅଭିମନ୍ୟୁ ମହାକୁଳ

ଫୁଲବାଣୀ ଜିଲ୍ଲା ବଉଦ ସବ୍‌ଡ଼ିଭିଜନ ତାଳପଡ଼ିଆ ଗ୍ରାମରେ ତା ୨୮ । ୭ । ୧୯୨୧ ରେ ଅଭିମନ୍ୟୁ ମହାକୁଳଙ୍କ ଜନ୍ମ । ତାଙ୍କ ପିତା ମାଧବ ମହାକୁଳ ଓ ମାତା ଦୁଃଖୀ ମହାକୁଳ । ଏମ୍ ଇ ଜଣେ ସ୍କୁଲର ଶିକ୍ଷକତା କରୁଥିଲେ ଓ ବର୍ତ୍ତମାନ ଅବସର ନେଇ ନିଜର ତାଳପଡ଼ିଆ ବାସରେ ଅବସ୍ଥାନ କରୁଛନ୍ତି । ତାଙ୍କର 'ଗାନ୍ଧି ସନ୍ଦେଶ' ନାମକ ପୁସ୍ତିକା ପ୍ରକାଶିତ ।

—o—

## ଶ୍ରୀ ଅନାଦି ଚରଣ ନାୟକ

୧୯୨୦ ମସିହା ୨ୟ ମାସ ଜନ୍ମଣେ ତାରିଖରେ ବଉଦ ଥାନା ମୁଣ୍ଡାପଡ଼ା ଗ୍ରାମରେ ଜନ୍ମ । ପିତା ୰ ରଘୁନାଥ ନାୟକ ଓ ମାତା ୰ଶୁଦ୍ଧ.ଗ ନାୟକ । ଶିକ୍ଷାଗତ ଯୋଗ୍ୟତା ଜନ୍ମ ପ୍ରାଇମେଷ୍ଟ । ୧୯୩୦ ରୁ ଲେଖା ଆରମ୍ଭ । ପ୍ରକାଶିତ ପୁସ୍ତିକା :— ୧- ଆଦି ଅନାଦି ମହାଲୀଳା ୨- ଆଦି ଅନାଦି ଦିବ୍ୟାନୁଷ୍ଠାନ ଯୋଗମାୟା ସାଧନା ୩- ମହାମାୟା ଆଦିମାତା ସ୍ତବ ୪- ଆଦିମ ମହାଲୀଳା ୫- ଦେଖ ଧୂମକେତୁ ଲଙ୍କା ତାର ଉଦୟ ୬- କଂଗ୍ରେସ ଶତ ବାର୍ଷିକୀ ଉତ୍ସବ ୭- ମାନ ପତ୍ର ୮-ଭୂତ ପ୍ରେତଙ୍କ ଚିତ୍କାର ଓ ଭକ୍ତତୋଷଙ୍କ ଭବିଷ୍ୟତ ବାଣୀ ୯- ବୌଦ୍ଧ କନ୍ଧମାଳ ଭୂସଂସ୍କାର ସ୍କୁଲ୍ ୧୦- ସ୍ୱାଧୀନତା ସୈନିକଙ୍କ ଭତ୍ତା ୧୧- ସ୍ୱାଧୀନତା ସଂଗ୍ରାମୀ ଆଦିମାନବର ମାନପତ୍ର । ଅପ୍ରକାଶିତ-ଆଦିମ ଆଦି ପୁରାଣ ୧୨- କନ୍ଧମାଳର କନ୍ଧ ମାଦଳା ୧୩- ଆଦିମ ଆଦି ଇତିହାସ ୧୪- ମାତୃଦେବୀ ବନ୍ଦନା ୧୫- ଆଦି ମାନବର ମାତୃପୂଜା

ଓ ଆଦୃତ ଅନେକ । ଏହି ପ୍ରକାଶିତ ଓ ଅପ୍ରକାଶିତ ପୁସ୍ତିକା ଗୁଡ଼ିକ ବଜାରର ଚଟି ବହି ଭଳି ନୁହେଁ [ ଗୁଣ ମୂର୍ତ୍ତି ଆ କ୍ଷୁଦ୍ର ] ହେଲେ ମଧ୍ୟ ସୂତ୍ରଗତ ଛନ୍ଦ, ଯତିପାତ ଇତ୍ୟାଦିକୁ ବାଦ ଦେଇ ନ ଥିବାରୁ ଶ୍ରୁତି ମଧୁର ହୋଇ ପାରିଛି । ଶ୍ରୀ ନାୟକ ଜଣେ ଆଦିବାସୀ ନେତା ଓ ଦକ୍ଷ ସଙ୍ଗଠକ । ସେ ବଉଦ ଆଦିମ ମହାସଂଘର ସଭାପତି ଅଛନ୍ତି । ସେ ମଧ୍ୟ ଜଣେ ସ୍ୱାଧୀନତା ସଂଗ୍ରାମୀ ।

—o—

## ଓ୍ୱାହିଦା ବେଗମ

ତା ୨୩ । ୧୨ । ୧୯୬୯ ରେ ଫୁଲବାଣୀ ଜିଲ୍ଲା ବଉଦ ସଦରରେ ଓ୍ୱାହିଦା ବେଗମ୍ ଙ୍କ ଜନ୍ମ । ପିତା ମହମ୍ମଦ ଇସରାଇଲ ଓ ମାତା ଜୁଲେଖା ବେଗମ୍ । ସେ ବର୍ତ୍ତମାନ ବଉଦ ପଞ୍ଚାୟତ କଲେଜର +୩ କଳା ଶେଷବର୍ଷର ଛାତ୍ରୀ ୧୯୮୪ ରୁ ଛୋଟ ଛୋଟ କବିତା ଲେଖିବା ଆରମ୍ଭ କରିଛନ୍ତି ଓ ତାଙ୍କର କେତେକ କବିତା ‘ ମର୍ମ ’ ସ୍ୱତବାର୍ତ୍ତା ଓ ‘ ବଉଦ ’ କବିତାରେ ପ୍ରକାଶିତ ।

ବର୍ତ୍ତମାନ ଠିକଣା
ଜେଲ୍ ରୋଡ୍ ବଉଦ

୭୬୨ ୦୧୪



## ଅଭିମନ୍ୟୁ ଦାସ

ଜନ୍ମ ତା ୧ । ୫ । ୧୯୫୪ ରେ ଫୁଲବାଣୀ ଜିଲ୍ଲା ହରଭଙ୍ଗା ଥାନା ଲକ୍ଷ୍ମୀପୁର ଗ୍ରାମ ନିକଟସ୍ଥ ବାଇଶିପଲ୍ଲୀ ଗ୍ରାମରେ । ପିତା ବୈଷ୍ଣବ ଦାସ ମାତା ସୁନାଫୁଲମତି ଦେଈ । ଶିକ୍ଷାଗତ ଯୋଗ୍ୟତା ମାଟ୍ରିକ ଲଟି ଓ ପେଷା ଶିକ୍ଷକତା । ୧୯୭୫ ରୁ ସାହିତ୍ୟ ପ୍ରତି ମନବଳାଇ ଅନେକ ନାଟକ ଓ କବିତା ରଚନା କରିଛନ୍ତି । ତାଙ୍କର ଅପ୍ରକାଶିତ ସତ୍ୟପୂର୍ଣ୍ଣ ଗୀତା ୨- ରକ୍ତାକ୍ତ ଚତୁଅଳି ୩- ମନମଞ୍ଜୁଷା ୪- ରାମାୟଣର ପାଞ୍ଚଟି ଅପେରା ଓ ଅନେକ ଭଜନ । ଜଣେ ପାଲା ଗାୟକ ଓ ନାଟ୍ୟ ନିର୍ଦ୍ଦେଶକଭାବେ ହରଭଙ୍ଗା ଅଞ୍ଚଳରେ ପରିଚିତ ।

ବର୍ତ୍ତମାନ ଠିକଣା - ସା. ପୋ. ରାମଗଡ଼ ଜି. ଫୁଲବାଣୀ ।

– ○ ••

## ଶ୍ରୀମତୀ କମଳିନୀ ମହାରଣା

ଶ୍ରୀମତୀ କମଳିନୀ ମହାରଣାଙ୍କର ଜନ୍ମ ତା ୧୭ । ୮ । ୧୯୪୮ ରେ ତାଙ୍କର ସ୍ୱାମୀ ଶ୍ରୀ କୃଷ୍ଣଚନ୍ଦ୍ର ମହାରଣା । ଶ୍ରୀମତୀ ମହାରଣା ବି. ଏ. ପାସ କଲାପରେ ବିବାହ କରି ବଉଦରେ ୧୯୬୮ ରୁ ଅବସ୍ଥାନ କରୁଛନ୍ତି । ୧୯୬୧ ରୁ ସେ କବିତା, ଗଳ୍ପ; ଓ ଉପନ୍ୟାସ ଲେଖା ଆରମ୍ଭ କରିଛନ୍ତି । ନିର୍ଜ୍ଜରେ ବସନ୍ତ ନାମକ ଗଳ୍ପ ସଂକଳନ ପ୍ରକାଶିତ । ସେ ରାଜ୍ୟ ସମାଜ ମଙ୍ଗଳ ବୋର୍ଡ଼ର ଫୁଲବାଣୀ ଜିଲ୍ଲାର ପ୍ରତିନିଧି ଏବଂ ବେସରକାରୀ ଜେଲ ପରିଦର୍ଶିକା ମଧ୍ୟ ଅଛନ୍ତି । ଶ୍ରୀମତୀ ମହାରଣା ଙ୍କ କବିତା ଓଡ଼ିଶାର ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶିତ ।

❋ ❋

## ଶ୍ରୀ କିଶୋର ଚନ୍ଦ୍ର ଡାଙ୍ଗ

ତା ୧ । ୪ ।୧୯୨୪ ରେ ଶ୍ରୀ ଡାଙ୍ଗ ଫୁଲବାଣୀ ଜିଲ୍ଲା ବଳଦ ସଦରରେ ଜନ୍ମଲାଭ କରିଛନ୍ତି । ତାଙ୍କର ପିତା ୰ ଦ୍ୱିଜପ୍ରିୟ ଡାଙ୍ଗ ଓ ମାତା ୰ ସୁନ୍ଦରମଣି । ମାଟ୍ରିକ ପାସ କଲାପରେ ଶିକ୍ଷକତା କରୁଛନ୍ତି । ଛନ୍ଦ ଧ୍ୱନ କବିତା ରଚନା କରନ୍ତି । ମାତୃଭଣ୍ଡାର ସେବା ରେ ମନବଳାଇ କାର୍ଯ୍ୟ କରୁଛନ୍ତି । ସେ ଏହି ଜିଲ୍ଲାର ସ୍ଥାୟୀ ବାସିନ୍ଦା । ୧୯୪୮ ରୁ ଠି ତାଙ୍କ ଲେଖା ଆରମ୍ଭ ।



## କିଶୋର ମିଶ୍ର

ତା ୨୭ । ୧୧ । ୧୯୫୭ ରେ ଶ୍ରୀ ମିଶ୍ର ଙ୍କର ବଳଦ ସଦରରେ ଜନ୍ମ । ତାଙ୍କର ପିତା ବେଣୁଧର ମିଶ୍ର ଓ ମାତା ଶ୍ରୀମତୀ ସୁହାସିନୀ ମିଶ୍ର । ଓଡ଼ିଶା ସରକାରଙ୍କ ଅଧୀନରେ ଜଣେ ତୃତୀୟ ଶ୍ରେଣୀ କର୍ମଚାରୀ ରୂପେ କାର୍ଯ୍ୟରତ । ୧୯୭୩ରୁ ଗଳ୍ପ; କବିତା ଓ ନାଟକ ଲେଖୁଛନ୍ତି ।

ତାଙ୍କର ଅପ୍ରକାଶିତ ପାଣ୍ଡୁଲିପି ପ୍ରମଦା ଓ ଅନ୍ୟାନ୍ୟ କବିତା, ନାଟକ- ବେକାର କ୍ଲବ, ଭାସିବା ପୂର୍ବରୁ; ଘୋ-ଘୋ ରାଣୀ । ୧୯୮୭ରେ କବିତା ପାଇଁ ହୀରାଖଣ୍ଡ ( ସମ୍ବଲପୁର ) ତରଫରୁ ବସନ୍ତମିଳନ ପୁରସ୍କାର ପ୍ରାପ୍ତ । ସେ ଫୁଲବାଣୀ ଜିଲ୍ଲାର ସ୍ଥାୟୀ ବାସିନ୍ଦା ।



## ଡ଼କ୍ଟର କୃଷ୍ଣଚନ୍ଦ୍ର ମିଶ୍ର

ଡକ୍ଟର କୃଷ୍ଣଚନ୍ଦ୍ର ମିଶ୍ରଙ୍କ ଜନ୍ମ ତା ୨।୬।୧୯୪୨ ରେ ଫୁଲବାଣୀ ଜିଲ୍ଲା ମନମୁଣ୍ଡା ଥାନା ନକଟଘ୍ନ ପିମିକଦେଦର ଗ୍ରାମରେ । ପିତା ୰ ହରିଭଥୀ ମିଶ୍ର ଓ ମାତା ୰ କମଳା ଦେବୀ । ଇଂରାଜୀ ସାହିତ୍ୟରେ ଏମ୍. ଏ ପାସ ଏବଂ ସାମ୍ପ୍ରତିକ ଆମେରିକାନ୍ ଉପନ୍ୟାସ ଉପରେ ଗବେଷଣା କରି ପି: ଏଚ୍. ଡ଼. ଉପାଧି ପ୍ରାପ୍ତ । ୧୯୬୨ ରୁ ଲେଖା ଲେଖି ପ୍ରତି ମନ ବଳାନ୍ତି ଓ କବିତା, ପ୍ରବନ୍ଧ ଏବଂ ଆଲୋଚନା ଆଦି ସୃଷ୍ଟି କରନ୍ତି । ମହାଶୂନ୍ୟ ନାମକ କବିତା ସଂକଳନ ୧୯୮୬ ରେ ପ୍ରକାଶିତ । ବହୁକବିତା ଓ ସମାଲୋଚନା ମୂଳକ ପ୍ରବନ୍ଧର ପାଣ୍ଡୁଲିପି ଚଚ୍ଛିତ ଅଛି । ଡ଼ଃ ମିଶ୍ରଙ୍କ ଉଦ୍ୟମ ଫଳରେ ଫୁଲବାଣୀ ଠାରେ ଓଡ଼ିଆ ଯୁବ ଲେଖକ ସମ୍ମିଳନ ପକ୍ଷରୁ ପ୍ରଥମ ଥର ପାଇଁ ଏକ ବାର୍ଷିକ ସାହିତ୍ୟ ସମାବେଶ ଅନୁଷ୍ଠିତ ହୋଇଥିଲା । ସେ ଫୁଲବାଣୀ ଜିଲ୍ଲାର ସ୍ଥାୟୀ ବାସିନ୍ଦା ଓ ବର୍ତ୍ତମାନ ଭୁବନେଶ୍ୱରର ରାଜଧାନୀ ମହାବିଦ୍ୟାଳୟର ପ୍ରାଧ୍ୟାପକ ଓ ଇଂରାଜୀ ବିଭାଗର ମୁଖ୍ୟଭାବେ କାର୍ଯ୍ୟ କରୁଛନ୍ତି । ଡକ୍ଟର ମିଶ୍ରଙ୍କ ବର୍ତ୍ତମାନର ଠିକଣା ।

ଡ଼: ୨୮, ବି: ଜେ. ବି. ଫ୍ଲାଟସ୍, ଭୁବନେଶ୍ୱର



## ଗଙ୍ଗାଧର ମିଶ୍ର

ତା ୫।୪।୧୯୫୫ ରେ ଶ୍ରୀ ମିଶ୍ର ଫୁଲବାଣୀ ଜିଲ୍ଲା ବାଲିଗୁଡାରେ ଜନ୍ମଲାଭ କରିଛନ୍ତି । ତାଙ୍କର ପିତା ଜୟକୃଷ୍ଣ ମିଶ୍ର ଓ ମାତା କମଳା ଦେବୀ । ଶିକ୍ଷାଗତ ଯୋଗ୍ୟତା ମାଟ୍ରିକୁଲେସନ ଓ ଡ଼ିପ୍ ଇନ୍ ଫାଇନ୍ ଆର୍ଟ ।

ଶ୍ରୀ ମିଶ୍ର ଚିତ୍ରକଳା କ୍ଷେତ୍ରରେ ନିଜକୁ ପ୍ରତିଷ୍ଠା କରି ପାରିଛନ୍ତି ଓ ଆଧୁନିକ କବିତା ସୃଷ୍ଟିରେ ମଧ୍ୟ ନିଜର ଦକ୍ଷତାର ପ୍ରମାଣ ଦେଇପାରିଛନ୍ତି । ବହୁ ଆଧୁନିକ କବିତାର ସ୍ରଷ୍ଟା ଶ୍ରୀ ମିଶ୍ରଙ୍କ କବିତା ସଂକଳନ ପ୍ରକାଶ ଅପେକ୍ଷାରେ । ସେ ମଧ୍ୟ ଜଣେ ମଞ୍ଚ କଳାକାର । ଗଞ୍ଜାମ ଜିଲ୍ଲା କଳା କୈଷିକ ସଂଘ ବ୍ରହ୍ମପୁର ଦ୍ୱାରା ପୁରସ୍କାର ପ୍ରାପ୍ତ । ଫୁଲବାଣୀ ଜିଲ୍ଲାର ସ୍ଥାୟୀ ବାସିନ୍ଦା । ଲେଖା ଆରମ୍ଭ କାଳ ୧୯୬୩ ।

—o—

## ଶ୍ରୀ ଗୋପବନ୍ଧୁ ବଶି

୧୯୨୭ ମସିହାରେ ଫୁଲବାଣୀ ଜିଲ୍ଲା ତିଳେଶ୍ୱର ନିକଟ ବ୍ରାହ୍ମଣ ଗାଁରେ ଗୋପବନ୍ଧୁ ବଶିଙ୍କ ଜନ୍ମ । ତାଙ୍କ ପିତାଙ୍କ ନାମ କାଶୀନାଥ ବଶି । ଶ୍ରୀ ବଶି ସପ୍ତମ ଶ୍ରେଣୀ ଉତ୍ତୀର୍ଣ୍ଣ ହୋଇ ଶିକ୍ଷକତା କରୁଥିଲେ ଓ ଏହି ସମୟ ମଧ୍ୟରେ ତାଙ୍କର ଦୃଷ୍ଟି ଶକ୍ତି ଲୋପ ପାଇଲା । ସେ ବାଧ୍ୟ ହୋଇ ଚାକିରିରୁ ଅବସର ନେଲେ ଓ ନିଜ ପୈତୃକ ସଂପତ୍ତିର ରକ୍ଷଣାବେକ୍ଷଣ କରି କୃଷି କାର୍ଯ୍ୟ ଚଳାଇଲେ । କବିଙ୍କକୃତ ଶ୍ରୀ ରାଧାକାନ୍ତ ଜଣାଣ ଚଉତିଶା ପ୍ରକାଶ ପାଇ ଧର୍ମପ୍ରାଣ ପାଠକ ମାନଙ୍କ ମଧ୍ୟରେ ଆଦୃତ ହୋଇଛି । ଶ୍ରୀ ବଶି ବର୍ତ୍ତମାନ ତାଙ୍କ ଜନ୍ମ ସ୍ଥାନ ବ୍ରାହ୍ମଣ ଗାଁରେ ବସବାସ କରୁଛନ୍ତି । ତାହାଙ୍କ ବହୁ ପାଣ୍ଡୁଲିପି ପ୍ରକାଶ ଅପେକ୍ଷାରେ ।

—o—

## ଶ୍ରୀ ଗୋପୀନାଥ ଷଡ଼ଙ୍ଗୀ

ତା ୨୯ । ୧୨ । ୧୯୩୮ ରେ ସମ୍ବଲପୁର ଜିଲ୍ଲା ଶାସନ ନିକଟ ଛଲବ ଗ୍ରାମରେ ଶ୍ରୀ ଷଡ଼ଙ୍ଗୀଙ୍କ ଜନ୍ମ । ପିତା ସ୍ୱର୍ଗତ କମଳ ଲୋଚନ ଷଡ଼ଙ୍ଗୀ ଓ ମାତା ଭଗବତୀ ଦେବୀ । ଶିକ୍ଷାଗତ ଯୋଗ୍ୟତା ବି. ଏ. ବି. ଇଡ଼. । ଶିକ୍ଷା ବିଭାଗରେ ଅବସ୍ଥାପିତ ସରକାରୀ କର୍ମଚାରୀ । ୧୯୫୮ ମସିହାରୁ ଲେଖା ଆରମ୍ଭ କରନ୍ତି ଓ ଏକାଧାରରେ ଗଳ୍ପ, ପ୍ରବନ୍ଧ, ସମାଲୋଚନା ଓ ନାଟକ ରଚନାରେ ସିଦ୍ଧହସ୍ତ । ଶ୍ରୀ ଷଡ଼ଙ୍ଗୀଙ୍କ ଲେଖା ସ୍ୱପ୍ନଦୀପ୍ତି, ସମ୍ବଲପୁର କଥା, କୋଶଳ, ଲକ୍ଷ୍ମୀନାରାୟଣ ବଣେଶାଙ୍କ, କଟୁସତ୍ୟ, ଭୂବନଶ୍ରୀ, ଶାଶ୍ୱତ, କିଶଳୟ, ସ୍ୱାଗତମ୍, ଖଦ୍ୟୋତ, ମେହେର ଭୂମି, ଆଲୋକିକ, ଆରତି, ଅଗ୍ନିଶିଖା ପ୍ରଭୃତିରେ ପ୍ରକାଶିତ । ତାଙ୍କର ଅପ୍ରକାଶିତ ଲେଖା ଆନନ୍ଦ ଲହରୀ, ମେଘ ଦୂତ, କଳା-ପୁସ୍ତକ ଇତ୍ୟାଦି । ସମ୍ବଲପୁର ଜିଲ୍ଲା କବି ଓ ଲେଖକ ସମ୍ମିଳନୀ, ସମଲେଶ୍ୱରୀ କଳା ପରିଷଦ, କୋଶଳ ସାହିତ୍ୟ ସମାଜ, ସିଦ୍ଧେଶ୍ୱର ଧର୍ମ ସଂସଦର ସକ୍ରିୟ ସଭ୍ୟ ।



## ଭକ୍ତକବି ସ୍ୱର୍ଗୀୟ ଗୌରଚନ୍ଦ୍ର ପଲ୍ଲୀୟା

ସ୍ୱର୍ଗୀୟ କବି ଗୌର ଚନ୍ଦ୍ର ପଲ୍ଲୀୟାଙ୍କ ଜନ୍ମ ସମୟ ସଠିକ ଭାବେ ଜଣା ନ ପଡ଼ିଲେ ମଧ୍ୟ ତାଙ୍କର ଜନ୍ମ ଫୁଲବାଣୀ ଜିଲ୍ଲା ହରଭଙ୍ଗା ଥାନା କୋଡ଼ାପିଙ୍ଗା ମୌଜାରେ ହୋଇଥିଲା । ତାଙ୍କର ପିତାଙ୍କ ନାମ ୰ ଅନନ୍ତ ପଲ୍ଲୀୟା ଓ ମାତାଙ୍କ ନାମ ୰ ସତ୍ୟଭାମା ଦେବୀ । ସ୍ୱର୍ଗୀୟ କବି ମାତ୍ର ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ଅଧ୍ୟୟନ କରିଥିଲେ ମଧ୍ୟ ଧର୍ମ ଶାସ୍ତ୍ରରେ ଗଭୀର ଜ୍ଞାନ ଅର୍ଜ୍ଜନ କରିଥିଲେ ଓ ବହୁ ମୂଲ୍ୟବାନ ଧର୍ମଗ୍ରନ୍ଥ ଶ୍ରୀ ନୃସିଂହ ରସାମୃତ ( ୧୯୬୦ ) ବ୍ରଜ ବିଳାସ (୧୯୬୨)

ନ୍ତ୍ରେ ପଦ ସ୍ଥାମୀ ପ୍ରେମ ରଚନା କରିଥିଲେ । ଏହି ଗ୍ରନ୍ଥ ଗୁଡ଼ିକ ତାଙ୍କର ସୁଯୋଗ୍ୟ ପୁତ୍ର ଶ୍ରୀ ରଘୁନାଥ ପାଣିଗ୍ରାହୀଙ୍କ ଦ୍ୱାରା ପ୍ରକାଶ ପାଇଛି । କବିଙ୍କର ଲେଖା ଜଣାଣ କବିତା ଓ ରମ୍ୟାସ୍ତୁତି ପୁସ୍ତକ ଅପ୍ରକାଶିତ ଅବସ୍ଥାରେ ରହିଛି । କବି ଲେଖା ଲେଖି କରିବା ସଙ୍ଗେ ସଙ୍ଗେ ବହୁ ନାଟ୍ୟର ନିର୍ଦ୍ଦେଶନା ମଧ୍ୟ ଦେଇଥିଲେ । ଏହି କବି ହରଭଙ୍ଗା ଅଞ୍ଚଳରେ ଭକ୍ତ କବି ରୂପେ ପରିଚିତ । ସେ ଫୁଲବାଣୀ ଜିଲ୍ଲାର ସ୍ଥାୟୀ ବାସିନ୍ଦା ।

—୦—

## ଶ୍ରୀମତୀ ଗୌରୀ ପଣ୍ଡା

କବୟିତ୍ରୀ ଗୌରୀ ପଣ୍ଡାଙ୍କ ଜନ୍ମ କଟକ ଜିଲ୍ଲା ଚଣ୍ଡୀଖୋଲ ଥାନା କଣ୍ଟଣଅଣ୍ଡା ଗ୍ରାମରେ ୧୩ । ୬ । ୧୯୩୪ ରେ । ପିତା ୰ ବୈତାଳ ପଣ୍ଡା ଓ ମାତା ଚାନ୍ଦମଣି ଦେବୀ । ଶ୍ରୀମତୀ ପଣ୍ଡାଙ୍କ ଶିକ୍ଷାଗତ ଯୋଗ୍ୟତା ବି. ଏ. ( ଅନର୍ସ ) ଏମ୍. ଏଡ୍. । ନବମ ଶ୍ରେଣୀରେ ଅଧ୍ୟୟନ କରୁଥିବା ସମୟରୁ ଗଳ୍ପ; କବିତା, ପ୍ରବନ୍ଧ ( ଧର୍ମ ସମ୍ବନ୍ଧୀୟ ଓ ସଂସ୍କାର ମୂଳକ ) ଓ ନାଟକ ରଚନା କରୁଛନ୍ତି । ବିଭିନ୍ନ ପତ୍ରିକାରେ ସାମୟିକ ଭାବେ ତାଙ୍କର ଗଳ୍ପ କବିତା ଆଦି ପ୍ରକାଶ ପାଇଥାଏ । ଏକ ଗଳ୍ପ ସଂକଳନ ଓ ପଦ୍ୟ ସଂକଳନର ପାଣ୍ଡୁଲିପି ପ୍ରସ୍ତୁତ ହୋଇ ସାରିଥିଲେ ମଧ୍ୟ ପ୍ରକାଶ ପାଇଁ ପ୍ରେସ୍‌ର ଦ୍ୱାରସ୍ଥ ହୋଇନାହାନ୍ତି । ସେ ଓଡ଼ିଶାର ବହୁ ପ୍ରତିଷ୍ଠିତ ସାହିତ୍ୟାନୁଷ୍ଠାନ ସହ ସଂପୃକ୍ତ । ଶ୍ରୀମତୀ ପଣ୍ଡା ବହୁବ ପୁରସ୍କାର ପ୍ରାପ୍ତ ଓ ପୁଷ୍ପଗିରି ରାଜ୍ୟ ସ୍ତରୀୟ ପୁରସ୍କାର ମଧ୍ୟ ପାଇଛନ୍ତି । ଭଞ୍ଜ ସାହିତ୍ୟ ସମିତି ଓ ବେତାର ବାଣୀ ପ୍ରତିଷ୍ଠାନ ପକ୍ଷରୁ ମଧ୍ୟ ବହୁ ପୁରସ୍କାରର ଅଧିକାରିଣୀ । ଗତ ୧୯୭୦ ରୁ ସେ ଫୁଲବାଣୀ ଜିଲ୍ଲାରେ ଅବସ୍ଥାନ କରୁଛନ୍ତି । ବର୍ତ୍ତମାନ ଠିକଣା ।

ମାର୍ଫତ:- ଡାକ୍ତର ଲମ୍ବୋଦର ପଣ୍ଡା, ସା/ପୋ ବୌଦ, ଜି. ଫୁଲବାଣୀ

## ଘାସୀରାମ ସେଠୀ

ତା ୨୦ । ୭ । ୧୯୪୩ ରେ ଫୁଲବାଣୀ ଜିଲ୍ଲା ନଭଙ୍ଗା ଗ୍ରାମରେ ଜନ୍ମ । ପିତା ଗଦାଧର ସେଠୀ ଓ ମାତା ଦୂତି ଦେଓ୍ୱୀ । ଶିକ୍ଷାଗତ ଯୋଗ୍ୟତା ଏମ୍. ଏ. ଇ. ଟି. । ବର୍ତ୍ତମାନ ଶିକ୍ଷକତା କରୁଛନ୍ତି । ୧୯୬୨ ରୁ ଲେଖା ଆରମ୍ଭ । ଭଜନ, କବିତା, ଗଳ୍ପ, ଗୀତିନାଟ୍ୟ, ରଚନା କରନ୍ତି । ଅପ୍ରକାଶିତ ଲେଖା ଭଜନ ଆରଣ୍ୟ ଅର୍ଘ୍ୟ ୨- ରାମାୟଣ ଅରଣ୍ୟ କାଣ୍ଡ [ନାଟକ] ୩- ମହାଲକ୍ଷ୍ମୀ ପୂଜା [ନାଟକ] । ମଞ୍ଚ ଅଭିନେତା । ଏହି ଜିଲ୍ଲାର ସ୍ଥାୟୀ ବାସିନ୍ଦା ।



## ଜ୍ୟୋତିରଞ୍ଜନ ବହିଦାର

ଶ୍ରୀ ବହିଦାରଙ୍କ ଜନ୍ମ ବଲାଙ୍ଗିର ସହରରେ ତା ୩୧ । ୮ । ୧୯୫୪ ରେ । ପିତା ଶ୍ରୀ ଘାସିରାମ ବହିଦାର ଓ ମାତା ଶ୍ରୀମତୀ ସନୋଜିନୀ ବହିଦାର । ଏମ୍. ଏ. ଇଡ଼. ପରେ ବଉଦ ପଞ୍ଚାୟତ ମହାବିଦ୍ୟାଳୟରେ ଶିକ୍ଷା ବିଭାଗର ମୁଖ୍ୟ ଅଧ୍ୟାପକ ଭାବେ ଅବସ୍ଥାପିତ । ୧୯୬୭ ଛାତ୍ରାବସ୍ଥାରୁ ଗଳ୍ପ ଓ କବିତା ଲେଖୁଛନ୍ତି । ୧୯୮୧ ରେ ତାଙ୍କର କ୍ଷୁଦ୍ର ଗଳ୍ପ ସଂକଳନ 'ରେଶମୀ ମନ' ପ୍ରକାଶିତ । ସେ ଜଣେ ମଞ୍ଚ ଅଭିନେତା ଓ ନିର୍ଦ୍ଦେଶକ ଭାବେ ମଧ୍ୟ ପରିଚିତ । ଫୁଲବାଣୀ ଜିଲ୍ଲାର ସେ ଜଣେ ସ୍ଥାୟୀ ବାସିନ୍ଦା ।



## ତରଣୀସେନ ବସ୍ତିଆ

ଶ୍ରୀ ତରଣୀସେନ୍ ବସ୍ତିଆଙ୍କ ପିତା ସୋମନାଥ ବସ୍ତିଆ ଓ ମାତା ଯଶୋଦା ବସ୍ତିଆ । ଗ୍ରାମ ଖଣ୍ଟଖଣ୍ଟିଆ ଥା. ମନମୁଣ୍ଡା ଜି ଫୁଲବାଣୀ । ଜନ୍ମ ତା ୨୫ । ୭ । ୧୯୫୭ ରେ ଖଣ୍ଟଖଣ୍ଟିଆ ଗ୍ରାମରେ । ଆଇ. ଏ. ପାଶ୍

କଳପରେ ନଜର ମୌଳକ ବୃତ୍ତି କୃଷ କାର୍ଯ୍ୟରେ ନିୟୋଜିତ । ୧୯୭୭ ରୁ ଗଳ୍ପ, କବିତା, ସୃଷ୍ଟି କରି ଆସୁଛନ୍ତି । ଅର୍ଥିକ ମାନଦଣ୍ଡ ସୁଦୃଢ଼ ନ ଥିବାରୁ କୌଣସି ପୁସ୍ତକାଦି ପ୍ରକାଶ କରିବାକୁ ସେ ସକ୍ଷମ ହୋଇନାହାନ୍ତି । ତାଙ୍କ ନିକଟରେ ଗଳ୍ପ ଓ କବିତାର ଅନେକ ପାଣ୍ଡୁଲିପି ଗଚ୍ଛିତ ଅଛି । ଲେଖା ଲେଖି ବ୍ୟତିତ ଅଭିନୟରେ ମଧ୍ୟ ସେ ଅଂଶ ଗ୍ରହଣ କରିଥାଆନ୍ତି ।

— o —

## ଦାଶରଥୀ ପଟ୍ଟନାୟକ

ତା ୩ । ୨ । ୧୯୧୦ ରେ ବଉଦରେ ଶ୍ରୀ ପଟ୍ଟନାୟକ ଜନ୍ମ ଗ୍ରହଣ କରିଛନ୍ତି । ତାଙ୍କର ପିତା ୰ ମଧୁସୂଦନ ପଟ୍ଟନାୟକ ଓ ମାତା ୰ ଲକ୍ଷ୍ମୀ ଦେବୀ । ଶିକ୍ଷାଗତ ଯୋଗ୍ୟତା ମଧ୍ୟ ଇଂରାଜୀ । କିଛି କାଳ ପାଇଁ ଶିକ୍ଷକତା କରି ଅବସର ଗ୍ରହଣ କରିଛନ୍ତି । ୧୯୩୭ ରୁ ଧର୍ମ ଓ ସମାଲୋଚନା ମୂଳକ କବିତା, ଗୀତ ରଚନା କରି ଆସୁଛନ୍ତି । ତାଙ୍କର ପ୍ରକାଶିତ ପୁସ୍ତିକା ୧- ଭରସାରେ ଚଉତିଶା ୨- ଗୁଣ୍ଡିଚା ୩- ପ୍ରଭାତ ବୋଲି ୪- ବଉଳମାଳା ୫- ଜଗଦେଶ୍ଵର ଭଜନ ୬- ଧର୍ମ ସମୀକ୍ଷା ୭- ବୋଲ ଭାଇ ହରିବୋଲ ୮- ଆତ୍ମବୋଧ ଚଉତିଶା ୯- ବିଳାପ ଚଉତିଶା ୧୦- ଆତ୍ମାବୋଧ ୧୧- ନାମ ସ୍ମରଣ ଚଉତିଶା ୧୨- ବଉଦ ବନ୍ୟାର କରୁଣ କାହାଣୀ ୧୩- ଉପଦେଶ ଚଉତିଶା । ଅପ୍ରକାଶିତ ଗୀତ ପୁସ୍ତିକା- ବ୍ରଜବାଳୀ ବିଳାପ ଓ ଜୀବନ କାହାଣୀ । ଶ୍ରୀ ପଟ୍ଟନାୟକ କିଛି ଦିନ ପାଇଁ ସୋନପୁର ରାଣୀଙ୍କ ଜରିଆରେ ରାୟବାହାଦୁର ଲକ୍ଷ୍ମୀ ଚରଣ ପଟ୍ଟନାୟକଙ୍କ ସଂସ୍ପର୍ଶରେ ଆସିଥିଲେ ଓ ତାଙ୍କର ଅଭଙ୍ଗା କର୍ଣ୍ଣେଲ କାରଖାନାରେ କାର୍ଯ୍ୟ କରିଥିଲେ । ବର୍ତ୍ତମାନ ବଉଦରେ କୁଷ୍ଠାଶ୍ରମ ନିର୍ମାଣ କରି ରୋଗୀ ସେବାରେ ନିୟୋଜିତ । ଏ ଜିଲ୍ଲାର ସେ ସ୍ଥାୟୀ ବାସିନ୍ଦା ।



## ଶ୍ରୀ ଦୀନବନ୍ଧୁ ହୋତା

ଜନ୍ମ ତା ୧ । ୮ । ୩୮ ରେ ବଲାଙ୍ଗୀର ଜିଲ୍ଲା ସାଇମଡ଼ାବନ୍ଧପୁର ଥାନା କୃଷ୍ଣପାଲ ଗ୍ରାମରେ । ପିତା କୃଷ୍ଣଚନ୍ଦ୍ର ହୋତା ଓ ମାତା ୰ ସାଧିକା ହୋତା । ଏମ୍ ଏ. ଏଲ୍: ଏଲ୍. ବି. ପରେ ଓକିଲାତି କରୁଛନ୍ତି । ଛାତ୍ରାବସ୍ଥା ୧୯୫୫ ରୁ କବିତା, ଗଳ୍ପ ଓ ରମ୍ୟ ରଚନା ସୃଷ୍ଟି କରିବାରେ ସେ ନିରତ । ସେ କୋଶଲ ସାହିତ୍ୟ ସମ୍ମିଳନୀରେ ଯୋଗ ଦେବା ସଙ୍ଗେ ସଙ୍ଗେ ବହୁ ସାହିତ୍ୟିକଙ୍କୁ ସବୁଦିଗରୁ ଉତ୍ସାହିତ କରିଥାଆନ୍ତି । ସମ୍ପ୍ରତି ସେ ଫୁଲବାଣୀ ଜିଲ୍ଲାର ସ୍ଥାୟୀ ବାସିନ୍ଦା ରୂପେ ବୌଦ୍ଧଗଡ଼ ବାବୁସାହିରେ ଅବସ୍ଥାନ କରୁଛନ୍ତି । ଶ୍ରୀ ହୋତା ଜଣେ ଦକ୍ଷ ରାଜନୈତିକ ସଂଗଠକ ରୂପେ ବେଶ୍ ପରିଚିତ ।



## ଗୋଲକଗୋବିନ୍ଦ ପାଣିଗ୍ରାହୀ

ତା ୧ । ୧ । ୧୯୪୧ ରେ ଫୁଲବାଣୀ ଜିଲ୍ଲା ଦରଭଙ୍ଗା ଗ୍ରାମରେ ଜନ୍ମ । ପିତା ୰ କୃପାସିନ୍ଧୁ ପାଣିଗ୍ରାହୀ ଓ ମାତା ଶରତସୁନ୍ଦରୀ ଦେବୀ । ଶିକ୍ଷାଗତ ଯୋଗ୍ୟତା ଦଶମ ଇ. ଟି. ପେଶା ଶିକ୍ଷକତା । ଗଳ୍ପ, କବିତା ଶିଶୁ କବିତା ଓ ପ୍ରବନ୍ଧ ସୃଷ୍ଟି କରନ୍ତି । ପ୍ରକାଶିତ ପୁସ୍ତକ ୧- କଳିରେ ମନ ଚୈତନ୍ୟ ୨- ଭକ୍ତି କୁସୁମ ହାର ୩- ବଣ କୁସୁମ ହାର ୪- ମୃତ୍ୟୁ ପଥେ ୫- ଭକ୍ତି କୃପାଣ ୬- ପଲ୍ଲୀ ଭୂଆସୁଣୀ କାନ୍ଦଣା ୭- ବସ୍ତ୍ରାଅଣୀ ବନ୍ୟାର ବାର୍ତ୍ତା ୮- ମନ ଚୈତନ୍ୟ ସଂବାଦ ୯- ଝୁଲଣ ଗୀତିକା ୧୦- ଜୀବନାନନ୍ଦ ଭଜନ ମାଳା ୧୧- ଧରଣୀ ଉଠିଲା କାନ୍ଦି ୧୨- ଗଳ୍ପ କୁସୁମ ହାର । ଅପ୍ରକାଶିତ ଲେଖା- ଏ ସ୍ୱାଦ କପରି ? ବଣମଲ୍ଲୀ ଓ ବାଣୀଦୂତ ସାହିତ୍ୟ ପତ୍ରିକା

ସଂପାଦନା ସହ ସଂପୃକ୍ତ । ଫୁଲବାଣୀର ଯୁବ ଲେଖକ ସାମୁଖ୍ୟ ଓ ଯଦୁମଣି ସାହିତ୍ୟ ସଂସଦ, ଜଗତସିଂହପୁର ଦ୍ୱାରା ସମ୍ମାନିତ। ସେ ଫୁଲବାଣୀ ଜିଲ୍ଲାର ସ୍ଥାୟୀ ବାସିନ୍ଦା ।

— o —

## ଶ୍ରୀ ଧ୍ରୁବଚରଣ ଧିବେଲ

ଫୁଲବାଣୀ ଜିଲ୍ଲା ବଉଦ ଅନ୍ତର୍ଗତ ଟେକିବନ୍ଧ ଗ୍ରାମରେ ତା ୧୯-୧୧-୧୯୬୨ ରେ ଶ୍ରୀ ଧିବେଲଙ୍କ ଜନ୍ମ । ତାଙ୍କ ପିତା ରଘୁନାଥ ଧିବେଲ ଓ ମାତା ତୁଳସୀ ଧିବେଲ । ସମ୍ମାନର ସହ ବି. ଏସ୍. ସି. ପାସ୍ କରି ଶିକ୍ଷକତା କରୁଛନ୍ତି । ୧୯୮୪-୮୫ ରୁ ଗଳ୍ପ, ଶିଶୁ ସାହିତ୍ୟ ରଚନା କରି ଚାଲିଛନ୍ତି । ୧୯୮୭ ବର୍ଷର ମିଳନରେ ପ୍ରଜାତନ୍ତ୍ର ପ୍ରଚାର ସମିତି ପକ୍ଷରୁ ଶ୍ରୀ ଧିବେଲ ମୀମାଂସକ ପୁରସ୍କାର ପ୍ରାପ୍ତ । ତାଙ୍କର ବର୍ତ୍ତମାନ ଠିକଣା ସହକାରୀ ଶିକ୍ଷକ, ସରକାରୀ ବାଳିକା ଉଚ୍ଚ ବିଦ୍ୟାଳୟ, ବାଲିଗୁଡା ଜି ଫୁଲବାଣୀ । ଏ ଜିଲ୍ଲାର ସେ ସ୍ଥାୟୀ ବାସିନ୍ଦା ।

— o —

## ୰ ନଟବର ପ୍ରଧାନ

ନଟବର ପ୍ରଧାନଙ୍କ ଜନ୍ମ ଫୁଲବାଣୀ ଜିଲ୍ଲା ବଉଦ ସଦରରେ ତା ୮।୫।୧୯୨୨ ରେ ଓ ମୃତ୍ୟୁ ତା ୨୧।୯ ୧୯୮୩ ରେ । ଶିକ୍ଷାଗତ ଯୋଗ୍ୟତା ବି. ଏ. ବି. ଏଲ୍ । ପେଷା ଓକିଲାତି ଓ ରାଜନୀତି । ଏକଦା ସେ ଓଡ଼ିଶା ମନ୍ତ୍ରୀମଣ୍ଡଳରେ ପୂର୍ତ୍ତ ପରିବହନ, ଆଇନ, ମତ୍ସ୍ୟ ଓ ଜଙ୍ଗଲ ବିଭାଗର

କ୍ୟାବିନେଟ୍ ପାହ୍ୟାର ମନ୍ତ୍ରୀ ଥିଲେ ଓ ପରରୁ ଫୁଲବାଣୀ ଜିଲ୍ଲା ପରିଷଦର ସଭାପତି ଥିଲେ । ଏତଦ ବ୍ୟତୀତ ସେ ବହୁ ଶିକ୍ଷାନୁଷ୍ଠାନ ଓ ସରକାରୀ ବେସରକାରୀ ସଂସ୍ଥା ସହ ଓତଃ ପ୍ରୋତ ଭାବେ ଜଡ଼ିତ ଥିଲେ । ଛାତ୍ରାବସ୍ଥାରୁ ଲେଖା ଲେଖି ଓ ଭଲ ଅଭିନୟ କରିପାରୁଥିଲେ । ଜରୁରୀକାଳୀନ ପରିସ୍ଥିତି ସମୟରେ ବନ୍ଦୀର ଅନୁଚିନ୍ତା ( କବିତା ) ଦୁଇଟି ମିଶା ବନ୍ଦୀର କାହାଣୀ [ଗଳ୍ପ] ଓ ଜେଲ୍‌ରୁ ଚିଠି ନେ ଲେଖିଥିଲେ ଓ ତାହା ପ୍ରକାଶିତ । ୧୯୭୮ରେ ନୟାଗଡ଼ସ୍ଥ ଯଦୁମଣି ସାହିତ୍ୟ ସଂସଦ ପକ୍ଷରୁ ମାନ ପତ୍ର ପ୍ରାପ୍ତ । ସେ ପଶ୍ଚିମାଞ୍ଚଳର ଜଣେ ଟାଣୁଆ ନେତା ଭାବେ ସର୍ବଜ ସୁପରିଚିତ ।

—o—

## ଶ୍ରୀ ନବକୁମାର ମିଶ୍ର

ତା ୯ । ୫ । ୧୯୬୦ ରେ ବଉଦ ଉପଖଣ୍ଡରେ ଶ୍ରୀ ମିଶ୍ରଙ୍କ ଜନ୍ମ । ପିତା ଶ୍ରୀ ହରିନାରାୟଣ ମିଶ୍ର ଓ ମାତା ଶ୍ରୀମତୀ ବୈଦେହୀ ମିଶ୍ର । ଶିକ୍ଷଗତ ଯୋଗ୍ୟତା ବି. ଏ. ଏଲ୍. ଏଲ୍. ବି. । ପେଷା ଓକିଲାତି ଓ ସାମ୍ବାଦିକତା ; ଲେଖା ଆରମ୍ଭ କାଳ ୧୯୭୮ । କବିତା, କ୍ଷୁଦ୍ର ଗଳ୍ପ ଓ ପ୍ରବନ୍ଧ ରଚନା କରନ୍ତି । ତାଙ୍କର ବିଭିନ୍ନ ଲେଖା ଅନେକ ପତ୍ର ପତ୍ରିକାରେ ପ୍ରକାଶ ପାଇଛି । ସେ ମଞ୍ଚରେ ଅଭିନୟ ମଧ୍ୟ କରିପାରନ୍ତି । ଫୁଲବାଣୀ ଜିଲ୍ଲାର ସେ ସ୍ଥାୟୀ ବାସିନ୍ଦା ଅଟନ୍ତି ।



## ନରେନ୍ଦ୍ର କୁମାର ମୁଖୀ

ନରେନ୍ଦ୍ର କୁମାର ମୁଖୀଙ୍କ ପିତା ୰ ହନା ମୁଖୀ ଓ ମାତା ଶ୍ରୀମତୀ ଇନ୍ଦୁ ମୁଖୀ । ଢେଙ୍କାନାଳ ଜିଲ୍ଲା ଆଠମଲ୍ଲିକ ନିକଟସ୍ଥ ପୁଲେଶ୍ୱର ଗ୍ରାମରେ ତା ୯ । ୨ । ୧୯୫୨ ରେ ଶ୍ରୀ ମୁଖୀଙ୍କ ଜନ୍ମ । ତାଙ୍କର ଶିକ୍ଷାଗତ ଯୋଗ୍ୟତା

ସି. ଏ. ସି. ଲିଭ. ଓ ବ୍ୟବସାୟ ଶିକ୍ଷକତା । ଛାତ୍ରାବସ୍ଥାରୁ କବିତା ରଚନା କରି ଆସୁଛନ୍ତି । ଅବସର ସମୟରେ ସମାଜ ସେବାରେ ସେ ନିଜକୁ ନିୟୋଜିତ କରିଥାନ୍ତି । ଗତ ୧୧ ବର୍ଷ ହେବ ସେ ଏହି ଫୁଲବାଣୀ ଜିଲ୍ଲାରେ ରହି ଆସୁଛନ୍ତି । ବର୍ତ୍ତମାନ ଠିକଣା, ହରିଜନ ପଡ଼ା , ସା/ପୋ. ବହିଦ ଜି: ଫୁଲବାଣୀ ।

—o—

## ଶ୍ରୀ ନିରଞ୍ଜନ ସାହୁ

ତା ୧ । ୧୧ । ୧୯୨୩ ରେ ଫୁଲବାଣୀ ଜିଲ୍ଲା ପଦରପଡ଼ା ଗ୍ରାମରେ ଶ୍ରୀ ସାହୁଙ୍କ ଜନ୍ମ । ପିତା ୰ ରଘୁନାଥ ସାହୁ ଓ ମାତା ୰ ନୂଆଦେଇ ସାହୁ । ଏମ୍‌: ଇ: ଶିକ୍ଷା ପ୍ରାପ୍ତି ପରେ ଶିକ୍ଷକତା କରନ୍ତି । ୧୯୪୦ ରୁ ଲେଖା ପ୍ରତି ମନ ବଳାଇ ପୌରାଣିକ କାବ୍ୟ କବିତା ଉପନ୍ୟାସ ଆଦି ରଚନା କରନ୍ତି । ୧୯୫୭ ରେ ତାଙ୍କର କାବ୍ୟ ରାମବିଳାସ ଓ ୧୯୬୨ ରେ ରଣଭେରୀ କବିତା ପୁସ୍ତକ ପ୍ରକାଶିତ । ଶ୍ରୀ ସାହୁଙ୍କର ଅନ୍ୟାନ୍ୟ ଲେଖା ଗୁଡ଼ିକ ହେଲା [ପାଣ୍ଡୁଲିପି] ୧- ମୁକ୍ତ ଭାରତ ୨- ପଲ୍ଲୀ ଜୀବନ ୩- ରାମଲୀଳା ୪- କୃଷ୍ଣଲୀଳା ୫- କୀଚକ ବଧ ୬- ମଥୁରା ଯାତ୍ରା ୭- ସୀମାନ୍ତ ୮- କ୍ଷୁଦ୍ର କବିତା ୯- ଭକ୍ତି ସଂଗୀତ ସ୍ଥାନୀୟ ପାଠାଗାରର ସାଂସ୍କୃତିକ କାର୍ଯ୍ୟକ୍ରମରେ ସେ ଅଂଶ ଗ୍ରହଣ କରନ୍ତି । ରଣଭେରୀ ପୁସ୍ତକ ବିକ୍ରୟ ଲବ୍ଧ ଧନ ଦେଶ ରକ୍ଷା ପାଣ୍ଠିକୁ ଦାନ କରିଥିବାରୁ ତତ୍‌କାଳୀନ ପ୍ରଧାନ ମନ୍ତ୍ରୀ ସ୍ୱର୍ଗତ ଜବାହାରଲାଲ ନେହେରୁଙ୍କ ଠାରୁ ପ୍ରଶଂସା ପତ୍ର ପ୍ରାପ୍ତ ଓ ଓଡ଼ିଶା ମୁଖ୍ୟମନ୍ତ୍ରୀଙ୍କ ଦ୍ୱାରା ସଂବର୍ଦ୍ଧିତ । ଅନେକ ଗୋଷ୍ଠି ବଡ ସାହିତ୍ୟ ସଭାରେ ପୁରସ୍କୃତ । ତାଙ୍କର ରାମବିଳାସ କାବ୍ୟ ୧୯୬୨ ରେ ଡ଼ି. ପି. ଆଇ. ଙ୍କ ଦ୍ୱାରା ହାଇସ୍କୁଲ ଓ କଲେଜ ପାଠାଗାର ନିମନ୍ତେ ବିବେଚିତ । ଶ୍ରୀ ସାହୁ ଫୁଲବାଣୀ ଜିଲ୍ଲାର ସ୍ଥାୟୀ ବାସିନ୍ଦା ।

—o—

## ୰ ନେତ୍ରାନନ୍ଦ ମିଶ୍ର

ବୌଦ୍ଧ ରାଜ ଶାସନ କାଳରେ ନେତ୍ରାନନ୍ଦ ମିଶ୍ର ବଉଦ ଜଗଦୀଶ ପ୍ରେସର ମ୍ୟାନେଜର ଥିଲେ ଓ ସ୍କୁଲ ଇନସପେକ୍ଟର ମଧ୍ୟ ଥିଲେ । ସ୍କୁଲ ପିଲାଙ୍କ ପାଇଁ ସେ ସହଜ ଲିଖନ ଓ ପଠନ ପ୍ରଥମ ଓ ଦ୍ୱିତୀୟ ଭାଗ ରଚନା କରିଥିଲେ । ୧୯୪୮ ପରେ ସେ ବଡବଂଧ ଟ୍ରେନିଂ ସ୍କୁଲରେ ଶିକ୍ଷକତା କରୁଥିଲେ ।



## ଶ୍ରୀ ନୃସିଂହ ପ୍ରସାଦ ସାହୁ

ତା ୨୯ । ୪ । ୧୯୧୪ ରେ ଶ୍ରୀ ସାହୁଙ୍କର ବଉଦ ନିକଟସ୍ଥ ଗୁଣ୍ଟୁପାଲି ଗ୍ରାମରେ ଜନ୍ମ । ପିତା ୰ ଗୋବିନ୍ଦ ଚନ୍ଦ୍ର ସାହୁ ଓ ମାତା ଇନ୍ଦୁମଣି ସାହୁ । ଶିକ୍ଷାଗତ ଯୋଗ୍ୟତା ମାଟ୍ରିକ୍ ( ଉତ୍କଳ କାର୍ଯ୍ୟ ) । ୧୯୫୪ ରୁ କବିତା ଲେଖା ଆରମ୍ଭ କରି ବର୍ତ୍ତମାନ ସୁଦ୍ଧା କଲମ ଚଳାଇଛନ୍ତି । ବହୁ ଛନ୍ଦଭରା କବିତା ଓ ଗୀତର ପାଣ୍ଡୁଲିପି ତାଙ୍କ ନିକଟରେ ଥିଲେ ମଧ୍ୟ ପ୍ରକାଶ କରିବାର ସୁବିଧା ଏ ପର୍ଯ୍ୟନ୍ତ ସେ ପାଇ ପାରି ନାହାନ୍ତି । ଅତି ସୁନ୍ଦର ଶବ୍ଦ ସଂଯୋଜନା, ଛନ୍ଦପାତ, ତାଙ୍କ କବିତା ଗୁଡ଼ିକରେ ଦେଖିବାକୁ ମିଳେ । ଏହି ଅବହେଳିତ ପ୍ରତିଭା ବହୁ ବାଧା ବିଘ୍ନ ମଧ୍ୟରେ ଗତି କରି ମଧ୍ୟ ଅବସର ସମୟରେ କବିତା ଲେଖିବା ଅବ୍ୟାହତ ରଖିଛନ୍ତି । ଫୁଲବାଣୀ ଜିଲ୍ଲାର ସେ ସ୍ଥାୟୀ ବାସିନ୍ଦା ।

—୦—

## ପ୍ରଦୀପ ବସୁ

ତା ୫ । ୪ । ୧୯୫୫ ରେ ସମ୍ବଲପୁର ଜିଲ୍ଲା ସମଲେଇଁ୍ବଙ୍କ ବଡ଼ିଗ୍ବରେ ଜନ୍ମ । ପିତା ଶ୍ରୀ ଗୋପାଳ ଚନ୍ଦ୍ର ବସୁ ଓ ମାତା ଶ୍ରୀମତୀ ଶାନ୍ତିଲତା ବସୁ । ଓଡ଼ିଆରେ ଏମ୍. ଏ ପାସ୍ କଲାପରେ ବଉଦ ପଞ୍ଚାୟତ ମହାବିଦ୍ୟାଳୟରେ ଓଡ଼ିଆ ଅଧ୍ୟାପକ ଭାବେ କାର୍ଯ୍ୟ କରି ଆସୁଛନ୍ତି । ୧୯୭୪ ରୁ ଗଳ୍ପ; ପ୍ରବନ୍ଧ ଓ ଅନୁବାଦ ଲେଖା ଆରମ୍ଭ କରିଛନ୍ତି । ଶ୍ରୀ ବସୁ ଜଣେ ମଞ୍ଚ ଅଭିନେତା ଓ ମଞ୍ଚ ନିର୍ଦ୍ଦେଶକ ଓ ସୁବକ୍ତା । ୧୯୭୯ ରୁ ସେ ଏହି ଫୁଲବାଣୀ ଜିଲ୍ଲାରେ ରହି ଆସୁଛନ୍ତି ।



## ପ୍ରଫୁଲ୍ଲ ମହାକୁଳ

ଫୁଲବାଣୀ ଜିଲ୍ଲା ଜୁଗମୁଣ୍ଡା ଗ୍ରାମରେ ପ୍ରଫୁଲ୍ଲ ମହାକୁଳଙ୍କ ଜନ୍ମ । ପିତା ସଂସାର ମହାକୁଳ । ସେ [illegible] ଥିଲେ । ଶ୍ରୀ ମହାକୁଳ ଗଳ୍ପ, କବିତା, ଉପନ୍ୟାସ ଲେଖନ୍ତି । ଲେଖା ଲେଖି ଠାରୁ ସାହିତ୍ୟ ସଂଗଠନ ଜରିଆରେ ସାହିତ୍ୟ ସଂସ୍କୃତିର ପ୍ରସାରରେ ବିଶେଷ ମନ ନିବେଶ କରନ୍ତି । ସେ ବଉଦ ସାହିତ୍ୟ ପତ୍ରିକାର ସଂପାଦକ ଓ ବଉଦ ସାହିତ୍ୟ ଓ ସାଂସ୍କୃତିକ ପରିଷଦର ପ୍ରତିଷ୍ଠାତା । ତାଙ୍କର ସଂପାଦନାରେ ସମାଲୋଚନା ପତ୍ରିକା 'ଜନ ରାଜ୍ୟ' ମଧ୍ୟ ବଉଦରୁ ପ୍ରକାଶ ପାଉଥିଲା । ଶ୍ରୀ ମହାକୁଳ ବ୍ୟବସାୟ କରିବା ସଙ୍ଗେ ସଙ୍ଗେ ନିଜ ଅଞ୍ଚଳର ଉନ୍ନତି ମୂଳକ କାର୍ଯ୍ୟ କରିବା ନିମନ୍ତେ ରାଜନୀତିରେ ପ୍ରବେଶ କରିଛନ୍ତି । ବର୍ତ୍ତମାନ ଠିକଣା ମାର୍ଫତ- ସଂସାର ଛାପାଖାନା, ବଉଦ ୭୬୨ ୦୧୪ ।

—❀—

## ପ୍ରଫୁଲ୍ଲ କୁମାର ଚନ୍ଦ

ତା ୧ । ୭ । ୧୯୫୨ ରେ ଶ୍ରୀ ଚନ୍ଦ ଫୁଲବାଣୀ ଜିଲ୍ଲା ମନମୁଣ୍ଡା ଥାନା ଗିମିଳାଗଡ଼ର ନିକଟସ୍ଥ ରେଙ୍ଗାଲି ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ପିତା ନାରାୟଣ ଚନ୍ଦ ଓ ମାତା ସକୁନ୍ତଳା ଚନ୍ଦ । ବି. ଏ. ବି. ଇଡ଼୍. ପରେ ଶିକ୍ଷକତା କରୁଛନ୍ତି ଓ ଗତ ୧୯୮୩ ମସିହାରୁ ସମ୍ବଲପୁରୀ ଭାଷାରେ କବିତା ଓ ଗୀତ ରଚନା କରୁଛନ୍ତି । ତାଙ୍କର ' ମନ ଦହନା ' ନାମରେ ( ସମ୍ବଲପୁରୀ ଗୀତ ଗୁଚ୍ଛ ) ପାଣ୍ଡୁଲିପି ପ୍ରକାଶ ଅପେକ୍ଷାରେ । ମାତୃଭାଷା ଉନ୍ନତି ନିମନ୍ତେ ସେ ଚେଷ୍ଟା ଚଳାଇଛନ୍ତି । ସେ ବର୍ତ୍ତମାନ ଖଇରମାଳ ୟୁ. ଜି. ଏମ୍. ଇ. ସ୍କୁଲର ପ୍ରଧାନ ଶିକ୍ଷକ ଭାବେ କାର୍ଯ୍ୟ କରୁଛନ୍ତି ଓ ବଉଦର ବାବୁସାହିରେ ଅବସ୍ଥାନ କରୁଛନ୍ତି ।

—o—

## ପ୍ରମୋଦ କୁମାର ହୋତା

ଜନ୍ମ ତା ୧ । ୧୦ । ୧୯୪୩ ରେ ଫୁଲବାଣୀ ଜିଲ୍ଲା ଛତରଙ୍ଗ ନିକଟସ୍ଥ ଖଲିଆଟଗାଁ ଗ୍ରାମରେ । ପିତା ରଘୁନାଥ ହୋତା ଓ ମାତା ସୁମିତ୍ରା ଦେବୀ । ଶିକ୍ଷାଗତ ଯୋଗ୍ୟତା ନବମ ଇ. ଟି., ଶିକ୍ଷକତା କରନ୍ତି । ୧୯୬୩ ରୁ ଲେଖା ଆରମ୍ଭ । ବହୁ ଉପଯୋଗୀ ପୁସ୍ତକ, ଭଜନ, ନାଟକ ଶିଶୁ କବିତା, ଦଣ୍ଡ ନୃତ୍ୟ ଗୀତ ଆଦି ରଚନା କରନ୍ତି । ଅଭିନୟରେ ଅଂଶ ଗ୍ରହଣ କରନ୍ତି । ଏ ଜିଲ୍ଲାର ସ୍ଥାୟୀ ବାସିନ୍ଦା ।

—o—

## ୵ ପ୍ରହ୍ଲାଦ ବଣି

ଜନ୍ମ କାଳ ତା ୫ । ୧ । ୧୯୧୧ । ପିତା ଚୈତନ୍ୟ ବଣି ଓ ମାତା ବୃନ୍ଦାବନୀ ଦେବୀ । ଜନ୍ମ ସ୍ଥାନ ବରଗଡ । ଶିକ୍ଷାଗତ ଯୋଗ୍ୟତା ଆଇ: ଏ. ପିଟି । ଶିକ୍ଷକତା କରିବା ସଙ୍ଗେ ସଙ୍ଗେ ରାଜନୀତିରେ ଅଂଶ ଗ୍ରହଣ କରିଥିଲେ । ୧୯୩୦ ରୁ ସମାଲୋଚନା ମୂଳକ ଓ ସଂସ୍କାର ମୂଳକ ଲେଖା ଆରମ୍ଭ କରି-ଥିଲେ । ସେ ବରଗଡ ଇତିହାସ ପାଣ୍ଡୁଲିପି ରଚନା କରିଥିଲେ ଓ ସ୍ୱାଧୀନ ବୌଦ୍ଧ ବାର୍ତ୍ତା ନାମକ ପତ୍ରିକାର ପ୍ରତିଷ୍ଠାତା ଓ ସମ୍ପାଦନା କରୁଥିଲେ [୧୯୪୫ ରେ] । ଶ୍ରୀ ବଣି ଜଣେ ସ୍ୱାଧୀନତା ସଂଗ୍ରାମୀ । ତା ୧-୪-୧୯୭୯ ରେ ଓଡ଼ିଶା ସଂସ୍କୃତିକ ସମାଜ, ସମ୍ବଲପୁର ପକ୍ଷରୁ ରାଜ୍ୟପାଳଙ୍କ ଠାରୁ ମାନପତ୍ର ପାଇଥିଲେ । ସ୍ୱାଧୀନତା ସଂଗ୍ରାମୀ ମାନପତ୍ର ଓ ତାମ୍ର ପତ୍ର ତା ୧୫-୮-୧୯୭୨ରେ ପ୍ରଧାନ ମନ୍ତ୍ରୀଙ୍କ ଠାରୁ ମଧ୍ୟ ସେ ପାଇଥିଲେ । ବରଗଡ ପଞ୍ଚାୟତ ମହାବିଦ୍ୟାଳୟ-ର ପ୍ରତିଷ୍ଠାତା ସଂପାଦକ ଥିଲେ । ସେ ତା ୩-୫-୧୯୮୮ ରେ ସ୍ୱର୍ଗାରୋହଣ କରିଛନ୍ତି ।

—o—

## ପ୍ରସନ୍ନ କୁମାର ଚନ୍ଦ

ଶ୍ରୀ ପ୍ରସନ୍ନ କୁମାର ଚନ୍ଦ ତା ୧୫ । ୧୧ । ୧୯୫୦ ରେ କେନ୍ଦୁଝର ଜିଲ୍ଲା ଆନନ୍ଦପୁର ସବ୍‌ଡ଼ିଭିଜନର ପଦ୍ମା ଗ୍ରାମରେ ଜନ୍ମ ଗ୍ରହଣ କରିଛନ୍ତି । ତାଙ୍କ ପିତା ୵ ଧରଣୀଧର ଚନ୍ଦ ଓ ମାତା ପ୍ରିୟତମା ଚନ୍ଦ । ଆଇ. ଏସ୍. ସି ପାସ୍ କଲାପରେ କେନ୍ଦ୍ର ସରକାରଙ୍କ ଅଧୀନରେ ଜଣେ ତୃତୀୟ ଶ୍ରେଣୀ କର୍ମଚାରୀ ରୂପେ ଅବସ୍ଥାପିତ । କଲେଜ ଅଧ୍ୟୟନ ସମୟରୁ ସେ ଲେଖା ଲେଖି କରି ଆସୁଛନ୍ତି । ଆଧୁନିକ କବିତା ଓ ପ୍ରବନ୍ଧ ଲେଖିବାରେ ବିଶେଷ ଆଗ୍ରହୀ । ଫୁଲବାଣୀ ଯୁବ ଲେଖକ ସାମୂଖ୍ୟର ସଭାପତି ଥିଲେ । ବିଗତ ୧୬ ବର୍ଷ ହେବ ଫୁଲବାଣୀ ଜିଲ୍ଲାର ବିଭିନ୍ନ ସହରରେ ରହି ଆସୁଛନ୍ତି । ସଂପ୍ରତି ସେ ମନମୁଣ୍ଡା ସବ୍ ପୋଷ୍ଟ ଅଫିସରେ ପୋଷ୍ଟମାଷ୍ଟର ଭାବେ କାର୍ଯ୍ୟ ସମ୍ପାଦନ କରୁଛନ୍ତି ।

—o—

## ପ୍ରୀତି ରଥ

ବରଗଡର ବହିଷ୍ଠ ବ୍ୟବସାୟୀ ଶ୍ରୀ ଦୁର୍ଗାଶଙ୍କର ରଥ ଓ ମନ୍ଦାକିନୀ ରଥଙ୍କର ଅଲିଅଳି କନ୍ୟା ପ୍ରୀତିଙ୍କର ଜନ୍ମ ତା ୧୦ । ୭ । ୧୯୭୧ ମସିହାରେ ବରଗଡର ବଣିଗୁଣ୍ଡା ବାସଭବନରେ । ସେ ବର୍ତ୍ତମାନ ଆଇ. ଏସ୍. ସି. ଶ୍ରେଣୀର ଛାତ୍ରୀ । ଅଷ୍ଟମ ଶ୍ରେଣୀରେ ଅଧ୍ୟୟନ କରୁଥିବା ସମୟରୁ ଗଳ୍ପ, କବିତା ଲେଖିବା ଆରମ୍ଭ କରିଥିଲେ ଓ ତାଙ୍କର ଅନେକ ଉଚ୍ଚକୋଟୀର କବିତା ଛାତ୍ରବାର୍ତ୍ତା, ବରଗଡ, ଶାଳନ୍ଦୀ ରବିବାର ସଂବାଦର ସାହିତ୍ୟ ପୃଷ୍ଠା ଇତ୍ୟାଦିରେ ପ୍ରକାଶିତ । ତାଙ୍କର କୌଣସି ପୁସ୍ତକ ଏ ପର୍ଯ୍ୟନ୍ତ ପ୍ରକାଶ ପାଇ ନ ଥିଲେ ମଧ୍ୟ ସେ ଲେଖା ଲେଖିରୁ ଓହରି ଯାଇ ନାହାନ୍ତି । ଗଳ୍ପ କବିତା ଲେଖିବା ବ୍ୟତୀତ ବକ୍ତୃତା ଦେବା, ଗୀତ ଗାଇବା ଓ ବିଭିନ୍ନ କ୍ରୀଡ଼ାରେ ଅଂଶ ଗ୍ରହଣ କରିବାରେ ମଧ୍ୟ ତାଙ୍କର ବିଶେଷ ଆଗ୍ରହ ରହିଛି ।

—o—

## ଶ୍ରୀ ପ୍ରସନ୍ନକୁମାର ହୋତା

ତା ୧ । ୩ । ୧୯୩୭ ରେ ପୁରୀ ଜିଲ୍ଲା ଦଶପଲ୍ଲାରେ ଶ୍ରୀ ହୋତାଙ୍କର ଜନ୍ମ । ପିତା ସୁଦର୍ଶନ ହୋତା । ଆଇ. ଏ. ପାସ୍ ପରେ ସାନିଟାରି ସାଇନସ୍‌ରେ ଡିପ୍ଲୋମା ହାସଲ କରି ସରକାରୀ ଚାକିରୀରେ ଅବସ୍ଥାପିତ । ବର୍ତ୍ତମାନ ବାଉଁଶୁଣୀ ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ରରେ ଗୋଷ୍ଠି ସଂପ୍ରସାରଣ ଶିକ୍ଷାଦାତା ଭାବେ କାର୍ଯ୍ୟରତ । ୧୯୮୦ ରୁ କବିତା, ଗଳ୍ପ ଶିଶୁ ଉପଯୋଗୀ ଗଳ୍ପ କବିତା ଆଦି ସୃଷ୍ଟି କରୁ-ଛନ୍ତି । ୧୯୬୮ ଠାରୁ ଫୁଲବାଣୀ ଜିଲ୍ଲାରେ ରହି ଆସୁଛନ୍ତି । ବ୍ରହ୍ମପୁର ଶିବଶକ୍ତି ଜ୍ଞାନାମୃତ ଅନୁଷ୍ଠାନ ଦ୍ୱାରା କବିଶ୍ରୀ ପଦରେ ସମ୍ମାନିତ ।

—o—

## ଶ୍ରୀ ଫକୀର ମୋହନ ନାୟକ

ତା ୧ । ୧ । ୧୯୫୭ ରେ ଢେଙ୍କାନାଳ ଜିଲ୍ଲା ଭଦଳୀମୁଣ୍ଡା ନିକଟସ୍ଥ କୁଶୁଳୀ ଗ୍ରାମରେ ଜନ୍ମ । ପିତା ଯୋଗୀନ୍ଦ୍ର ନାୟକ ଓ ମାତା ଶକୁନ୍ତଳା ନାୟକ । ଏମ୍. ଏ. ଶିକ୍ଷା ସମାପ୍ତି ପରେ ସରାଙ୍କଗ୍ଭ ବ୍ଲକସ୍ତରେ ନିଯୁକ୍ତ । ବର୍ତ୍ତମାନ କଟକ ଉପଖଣ୍ଡ କାର୍ଯ୍ୟାଳୟରେ ଫୌଜଦାରୀ ନ୍ୟାୟାଳୟର ଭାରପ୍ରାପ୍ତ ଅଧିକାରୀ ( Officer in charge, Criminal court ) ଭାବେ କାର୍ଯ୍ୟରତ । ହାଇସ୍କୁଲ ଛାତ୍ର ଥିବା ସମୟରେ ସେ ଲେଖା ପ୍ରତି ମନ ବଳାଇ କବିତା, କ୍ଷୁଦ୍ର ଗଳ୍ପ ଓ ଏକାଙ୍କିକା ରଚନା କରୁଛନ୍ତି । ବିଶେଷ କରି ସେ ଆଧୁନିକ କବିତା ରଚନାରେ ବେଶ ପାରଦର୍ଶିତା ଲାଭ କରିଥିବା ତାଙ୍କର କବିତା ଗୁଡ଼ିକରୁ ସ୍ପଷ୍ଟ ଜଣାପଡେ । ଓଡ଼ିଶାର ବହୁ ପ୍ରତିଷ୍ଠିତ ପତ୍ରିକାରେ ସାମୟିକ ଭାବେ ତାଙ୍କର ଲେଖା ପ୍ରକାଶିତ । ଶ୍ରୀ ନାୟକଙ୍କ ଏକ କବିତା ସଂକଳନ ପ୍ରକାଶ ଅପେକ୍ଷାରେ । ୧୯୮୬ ରୁ ସେ କଟକରେ ରହି ଆସୁଛନ୍ତି ।

—o—

## ଶ୍ରୀ ଫଗୁ ସାହୁ

ଫଗୁ ସାହୁଙ୍କ ଜନ୍ମ କଟକ ଜିଲ୍ଲା ନରସିଂହପୁର ଥାନା ସାଗର ଗ୍ରାମରେ ତା ୧୫ । ୮ । ୧୯୪୭ ରେ । ପିତାଙ୍କ ନାମ ଦୟାନିଧି ସାହୁ ଓ ମାତା ସରଳା ଦେବୀ । ଶିକ୍ଷାଗତ ଯୋଗ୍ୟତା ମାଟ୍ରିକ ପିଟି । ବର୍ତ୍ତମାନ ଫୁଲବାଣୀ ଜିଲ୍ଲା ହରଭଙ୍ଗାରେ ଶିକ୍ଷକତା କରୁଛନ୍ତି । ୧୯୬୪ ରୁ ଲେଖା ଆରମ୍ଭ କରନ୍ତି ଓ ତାଙ୍କର ଗୀତି ନାଟ୍ୟ ମା ୨- ଶ୍ରିନାଥ ମେଳା ପ୍ରକାଶିତ । ଅପ୍ରକାଶିତ ଲେଖା ସମୂହ ୧- ଦଶାବତାର ୨- ନବ ବର୍ଷ ୩- ସତ୍ୟାର୍ଥ ଶତକ ୪- ଭଜନ ମାଳା ୫- ଶୀତ ଦୋକାନ ଓ ଅନ୍ୟାନ୍ୟ । ଅଭିନୟ ( ମଞ୍ଚ ) ମଧ୍ୟ କରନ୍ତି ।



## ଶ୍ରୀ ବନମାଳୀ ଦେହୁରୀ

ଶ୍ରୀ ବନମାଳୀ ଦେହୁରୀଙ୍କ ଜନ୍ମ ଫୁଲବାଣୀ ଜିଲ୍ଲା ପୁରୁଣାକଟକ ଗ୍ରାମରେ । ତାଙ୍କର ଜନ୍ମ ତାରିଖ ୭ । ୭ । ୧୯୨୩ । ଶ୍ରୀ ଦେହୁରୀଙ୍କ ପିତାଙ୍କ ନାମ ୰ ନଳାଦ୍ରୀ ଦେହୁରୀ । ସେ ସ୍ୱାସ୍ଥ୍ୟ ବିଭାଗ ଅଧୀନରେ ଲେପ୍ରସି ଆସିଷ୍ଟାଣ୍ଟ ରୂପେ କାର୍ଯ୍ୟ କରି ୧୯୮୨ ରେ ଅବସର ଗ୍ରହଣ କରିଛନ୍ତି ଓ ପୁରୁଣାକଟକର ପ୍ରସିଦ୍ଧ ଦେବୀ ମା ଭୈରବୀଙ୍କ ପୂଜକ ରୂପେ କାର୍ଯ୍ୟ ତୁଲାଉଛନ୍ତି । ତାଙ୍କର ଶିକ୍ଷାଗତ ଯୋଗ୍ୟତା ମଧ୍ୟ ଇଂରାଜୀ ପାଶ । ସେ କେବଳ ପଦ୍ୟ ରଚନା କରନ୍ତି । ଶ୍ରୀ ଦେହୁରୀ ଏକ ଦଣ୍ଡ ନାଟ୍ୟ ସଂସ୍ଥାର ପ୍ରତିଷ୍ଠାତା ଓ ଏଥି ନୃତ୍ୟ ପାଇଁ ଆବଶ୍ୟକ କେତେକ ଗୀତ ମଧ୍ୟ ସେ ରଚନା କରିଛନ୍ତି । କବିଙ୍କର ଭୈରବୀ ତନ୍ତ୍ର ପୀଠ ମୁକୁଟ ଦର୍ପଣ ବହି ପ୍ରକାଶିତ । କବି ବନମାଳୀ ଦେହୁରୀ ତାଙ୍କର ସ୍ଥାୟୀ ବାସସ୍ଥାନ ପୁରୁଣାକଟକରେ ଏବେ କାଳାତିପାତ କରୁଛନ୍ତି ।

—୦—

## ଶ୍ରୀ ବନମାଳୀ ପାଣିଗ୍ରାହୀ

ଫୁଲବାଣୀ ଜିଲ୍ଲା ବଲିଗୁଡ଼ା ସବଡିଭିଜନର ବଡ଼ଗିଗୁ ସାହିରେ ତା ୨୭-୧୧-୧୯୩୨ ରେ ଶ୍ରୀ ପାଣିଗ୍ରାହୀଙ୍କ ଜନ୍ମ । ତାଙ୍କ ପିତା ଶ୍ରୀ କେଶବ ଚନ୍ଦ୍ର ପାଣିଗ୍ରାହୀ ଓ ମାତା ଶ୍ରୀମତୀ ସୁନନ୍ଦା ଦେବୀ । କମ୍ପାନୀ ଗୁଣକାରୀରୁ ସ୍ୱଇଚ୍ଛାରେ ଅବସର ନେଇ ସଂପ୍ରତି ବଲ୍ଲିଦରେ ଅବସ୍ଥାନ କରୁଛନ୍ତି । ତାଙ୍କର ଶିକ୍ଷାଗତ ଯୋଗ୍ୟତା ମାଟ୍ରିକ୍ । ଟାଇପ୍‌ରାଇଟିଂ, ସର୍ଟହ୍ୟାଣ୍ଡ, ଡ୍ରାଫିଟିଂ, ବୁକ୍‌କିପିଂରେ ଡ଼ିପ୍ଲୋମା ପ୍ରାପ୍ତି । ୧୯୮୨ ରୁ ପ୍ରବନ୍ଧ, ଫିଚର, ଗଳ୍ପ, କବିତା ଆଲୋଚନା ଓ ସମାଲୋଚନା ମୂଳକ ଲେଖା ଆରମ୍ଭ କରିଛନ୍ତି । ତାଙ୍କର ପାଣ୍ଡୁଲିପି ସମୃଦ୍ଧ ଏକାଳ ପଖାଳ

ଏପରି, ପ୍ରତିଚ୍ଛବି, ଜଗତର ... ସଂଗ୍ରହିତ, କିଛି ସ୍ୱପ୍ନ କିଛି ସ୍ମୃତି, ମଦର ମିଳନ ପ୍ରଭୃତି । ସାହିତ୍ୟ ଓ ସମ୍ବାଦ ପତ୍ରିକା ମର୍ମର ସେ ସଂପାଦକ । ୧୯୮୮ ରେ ମହାଖଣ୍ଡ ପକ୍ଷରୁ ଗଳ୍ପ ନିମନ୍ତେ ବସନ୍ତ ମିଳନ ପୁରସ୍କାର ପ୍ରାପ୍ତ । ପ୍ରକାଶିତ ପୁସ୍ତକ- କବିତା ଦେଖାଇ ଦିଏ ଜନେ ନାହିଁ । ୧୯୮୭ ମୌଳିକ ଏକ ଜନଙ୍କ ପ୍ରବନ୍ଧ ପାଇଁ ସମ୍ବଲପୁରରୁ କବିରାଜ ଗୋପୀନାଥ କର (ପ୍ରଥମ ପୁରସ୍କାର) ପ୍ରାପ୍ତ । ୧୯୮୮ ବାସନ୍ତୀ ଉତ୍ସବ ଗଜରକେଳରୁ ପୁରସ୍କାର ପ୍ରାପ୍ତ ।

—୦—

## ଶ୍ରୀ ବସୁଦେବ ପାଣ୍ଡ

ତା ୨୪ । ୧୨ । ୧୯୫୬ ରେ ଫୁଲବାଣୀ ଜିଲ୍ଲା ମୁଣ୍ଡିପଦର ଗ୍ରାମରେ ଜନ୍ମ । ପିତା ଧର୍ମେନ୍ଦ୍ର ପାଣ୍ଡ ଓ ମାତା କୌଶୁଲ୍ୟା ପାଣ୍ଡ । ଓଡ଼ିଆରେ ଏମ୍: ଏ: ପାସ୍ କଲାପରେ ଅଧ୍ୟାପନା କରି ଆସୁଛନ୍ତି ଓ ବର୍ତ୍ତମାନ ବଲାଙ୍ଗୀର ଜିଲ୍ଲା ବୀରମହାରାଜପୁର ମହାବିଦ୍ୟାଳୟରେ ଅଧ୍ୟାପକ ଭାବେ କାର୍ଯ୍ୟ କରୁଛନ୍ତି । ୧୯୭୫ ରୁ ଲେଖା ପ୍ରତି ମନ ବଳାଇଛନ୍ତି ଓ କବିତା, କ୍ଷୁଦ୍ରଗଳ୍ପ; ପ୍ରବନ୍ଧ ରଚନା କରୁଛନ୍ତି । ସେ ଏହି ଜିଲ୍ଲାର ସ୍ଥାୟୀ ବାସିନ୍ଦା ।

—୦—

## ଶ୍ରୀ ବାବାଜୀ ଚରଣ ସ୍ୱାଇଁ

୧୯୪୭ ମସିହା ଜାନୁୟାରୀ ବାର ତାରିଖରେ କଟକ ଜିଲ୍ଲା କେନ୍ଦ୍ରାପଡ଼ା ଥାନା ଭୁଞ୍ଜପୁର ଗ୍ରାମରେ ଜନ୍ମ । ପିତା ୰ ଦାମୋଦର ସ୍ୱାଇଁ ଓ ମାତା ୰ ପିତାମ୍ବରୀ ଦେବୀ । ଶିକ୍ଷାଗତ ଯୋଗ୍ୟତା ମାଟ୍ରିକୁ୍ୟଲେସନ । ଛାତ୍ର ବୟସରୁ ଲେଖାଆରମ୍ଭ । ପ୍ରଥମ ଲେଖା ବଳଦେବ ହା. ଇ. ସ୍କୁଲ୍ କେନ୍ଦ୍ରା ପଡ଼ାର ମୁଖପତ୍ର

ଶ୍ୱେତପତ୍ରରେ ପ୍ରକାଶିତ । ପରେ ମାତୃଭୂମିର କଂଶାର ଫଉଜ ବଲ୍ଲଗରେ ଧାର ବାହିକ ଭାବେ କବିତା ପ୍ରକାଶିତ । ଶିଶୁ ପତ୍ରିକା, ଧୂଳିଚନ୍ଦନ, ମରାଳ ଗ୍ଳନ, ଟିକଦୁନିଆ; ସୁନାପିଲ୍ଲ; ସୁଜାତା, ବାଇମାମୁଁ; କୁଆଁତାର, ଶିଶୁନୟନ, ଚକାଡ଼ୋଳା, ଝାଇମା, ଟିକିଫୁଲ, ଆମେ କୁନାକୁନି, ବାରମଜା, ଆ ଜହ୍ନମାମୁଁ ଶରତଶଶୀ ପ୍ରଜାତନ୍ତ୍ରର ସାପ୍ତାହିକ ମୀନାବଜାରରେ ସାମୟିକ ଭାବେ ଗଳ୍ପ କବିତା ପ୍ରକାଶିତ । ବହୁ ଗଳ୍ପ, କବିତା, ମନସ୍ତ, ଝଙ୍କାର ପ୍ରସଙ୍ଗ; ପରିଚୟ; କଳିକୁ, ନଗର; ବାର୍ତ୍ତାଭୂମି, ଜ୍ୟୋତ୍ସ୍ନା, ସମନ୍ୱୟ, ବନାନୀ, ବାଣୀ, ସବୁଜ ଅରଣ୍ୟ; ବଜ୍ରଦ, ଇତସିତା, ବନମାଳା; ପଞ୍ଚାମୃତ, ଇନ୍ଦୁ, ସରଣୀ, ମଶାଲ; ତପୋବନ, ମଧୁଲିକା, ନିର୍ଝର, ଗଣମୁକ୍ତି ଓ ଗନ୍ଧବହ ଇତ୍ୟାଦି ପତ୍ରିକାରେ ବିଭିନ୍ନ ସମୟରେ ପ୍ରକାଶିତ । ବହୁ ପ୍ରବନ୍ଧ ଗଳ୍ପ ଓ କବିତା ଦୈନିକ ଆଶା, ସ୍ୱରାଜ୍ୟ ମାତୃଭୂମି, ହୀରାଖଣ୍ଡ, ପ୍ରଜାତନ୍ତ୍ର ଓ ପ୍ରଗତି ବାଦୀରେ ପ୍ରକାଶିତ ।

ପ୍ରକାଶିତ ଉପନ୍ୟାସ [୧୯୭୨ ରୁ ୧୯୮୨] ୧- ମଉଳାଫୁଲ ୨- ଅନ୍ଧକ ଝଡ଼ର ଲୁହ ୩- ଅନେକ ସ୍ୱପ୍ନର କବର ୪- ସାତପାହାଡ଼ର ପାରେ ୫- ବୟସର ଦାଗ ୬- ନବୀନ ବୟସୀ ବାଳା ୭- ସ୍ୱାମୀ ଦେବତା ୮- ଅନ୍ତଗୋପ- ନୟ । ୯- କାବ୍ୟ- ପ୍ରଣୟ କାବ୍ୟ ୧୦- ଗୁରୁ ଭକ୍ତି ୧୧- ( ଗଳ୍ପ ସଂକଳନ ) ପଥପ୍ରାନ୍ତର ଗପ । ୧୯୭୪ ରେ ଲେଖକଙ୍କର ନାଟକ ' ମନେଥିଲା ଆଶା ' ଜ. ଉଦୟଗିରି ଠାରେ ଫୁଲବାଣୀର ଜିଲ୍ଲାପାଳ ଶ୍ରୀ କୈଳାସ ଚନ୍ଦ୍ର ମିଶ୍ର I, A, S, ଙ୍କ ଦ୍ୱାରା ଉଦ୍‌ଘାଟିତ ଓ ମଞ୍ଚସ୍ଥ । ଅପ୍ରକାଶିତ ପାଣ୍ଡୁଲିପି, ଉପନ୍ୟାସ ତାରାଭରା ରାତି ୨- ଫଗୁଣ ଆସିଛି ଫେରି ୩- ମିସ୍ ସେଫାଳୀ ୪- ମିସ୍ ଅନୁପମା ନାଟକ- ମନେଥିଲା ଆଶା ୨- ନକଲ ମନ୍ତ୍ରୀ ।

ଶିଶୁ କବିତା- ମଉଳାଫୁଲର ମାଳ ୨- ଫୁଟିବା ଫୁଲ ଏ ବନ୍ଧୁ ହସିବା ଭଉଣୀ ଭାଇ ୩- ପୁଷ୍ପଗୁଚ୍ଛ ୪- ଗଳ୍ପଗୁଚ୍ଛ ୫- ମରଣଜୟୀ ଓ ଶତାଧିକ ସଙ୍ଗୀତ ।

କିଛି ବର୍ଷପାଇଁ ପ୍ରଜାତନ୍ତ୍ରରେ ସାମ୍ବାଦିକତା କରିଥିଲେ । ସାହିତ୍ୟ ପତ୍ରିକା ବନାନୀର ସହ ସମ୍ପାଦକ ନିର୍ଝରର ସମ୍ପାଦନା ମଣ୍ଡଳୀ ସଭ୍ୟ, ଝରଣାର ସମ୍ପାଦକ । ଫୁଲବାଣୀ ଲେଖକ ପରିଷଦର ସମ୍ପାଦକ । ଜିଲ୍ଲା ଯୁବ ଲେଖକ ସାମ୍ମୁଖ୍ୟର କାର୍ଯ୍ୟକାରୀ ସଭ୍ୟ । ଦକ୍ଷିଣ ଓଡ଼ିଶା ସାଂସ୍କୃତିକ ପରିଷଦର ଆଞ୍ଚଳିକ ସମ୍ପାଦକ ଅଛନ୍ତି ।

୧୯୭୨ ରେ ଜିଲ୍ଲା ସ୍ତରୀୟ ଦେଶାତ୍ମ ବୋଧ କବିତା ରଚନା ପ୍ରତିଯୋଗିତାରେ ପ୍ରଥମ ପୁରସ୍କାର ଜିଲ୍ଲାପାଳଙ୍କ ଠାରୁ ପ୍ରାପ୍ତ । ୧୯୮୭ ରେ ଶ୍ରେଷ୍ଠ ଗଳ୍ପ ପାଇଁ ବ୍ରହ୍ମପୁରସ୍ଥ ଦୈନିକ ଆଶା ପ୍ରତିଷ୍ଠାନ ପକ୍ଷରୁ ପୁରସ୍କୃତ । ୧୯୬୭ ରୁ ଫୁଲବାଣୀ ଜିଲ୍ଲାରେ ବସବାସ କରୁଛନ୍ତି । ଶ୍ରୀ ସ୍ୱାଇଁ ଓଡ଼ିଶା ରାଜ୍ୟ ସରକାରଙ୍କ ରାଜସ୍ୱ ବିଭାଗର ଜଣେ ତୃତୀୟ ଶ୍ରେଣୀ କର୍ମଚାରୀ ଭାବେ କାର୍ଯ୍ୟ କରୁଛନ୍ତି ।

ବର୍ତ୍ତମାନ ଠିକଣା ଉପଜିଲ୍ଲା ପାଳଙ୍କ କାର୍ଯ୍ୟାଳୟ ପୋ. ପୋ. ବଉଦ ।

—୦—

## ଶ୍ରୀ ବିବେକା ନନ୍ଦ ପଟ୍ଟନାୟକ

୧୯୪୧ ମସିହା ଅକ୍ଟୋବର ମାସ ୧ ତାରିଖରେ ଫୁଲବାଣୀ ଜିଲ୍ଲା ବଉଦର ମହାନ୍ତି ସାହିରେ ଶ୍ରୀ ପଟ୍ଟନାୟକ ଙ୍କ ଜନ୍ମ । ପିତା ଶ୍ୟାମ କୁମାର ପଟ୍ଟନାୟକ ଓ ମାତା ଶ୍ରୀମତୀ ଶକୁନ୍ତଳା । ଶିକ୍ଷାଗତ ଯୋଗ୍ୟତା ବି. ଏ. ଏମ୍. ଏଡ୍. । ଜୀବିକା ଶିକ୍ଷକତା । ଛାତ୍ରାବସ୍ଥାରୁ ଲେଖାରେ ମନବଳାନ୍ତି ଓ ତାଙ୍କର ପ୍ରଥମ ପ୍ରବନ୍ଧ ବଉଦସ୍ଥ ଯୋଗେନ୍ଦ୍ର ଦେବ ଉଚ୍ଚ ଇଂରାଜୀ ବିଦ୍ୟାଳୟ ମୁଖପତ୍ର ଭାରତୀରେ ପ୍ରକାଶ ପାଏ । ତା ପରେ ଅନେକ ଗୀତ କବିତା, ପ୍ରବନ୍ଧ, କାହାଣୀ ଏକାଙ୍କିକା ନାଟକ ଆଦି ସୃଷ୍ଟି କରନ୍ତି । ୧୯୭୯ ଓ ୧୯୮୭ ରେ ତାଙ୍କର

ଦୁଇଟି ନାଟକ ବହି ଯଥାକ୍ରମେ ବାପୁାର କ ଯାଏ ଓ ନର୍ଜିବ ପୁଥିଙ୍କ ପ୍ରକାଶିତ । ଅପ୍ରକାଶିତ- ଇନ୍ଦ୍ରଜାଲ, ଜନ୍ମଦୂଷଣ, ଗଙ୍ଗାରେ ଯମୁନା, ସମସ୍ତ, ଶତାବ୍ଦିର ଶେଷ, ଲହଗରେ ଆର୍ତ୍ତିଚକ୍କାର ଓ ଅନ୍ୟାନ୍ୟ । ମିଠର ମିଲନ୍ ନିର୍ମାଣ ଓ ନର୍ଦ୍ଦେଶନା ଦେବାର ଅଭିଳାଷ ରହିଛି । ଶ୍ରୀ ପଟ୍ଟନାୟକ ଏ ଜିଲ୍ଲାର ସ୍ଥାୟୀ- ବାସିନ୍ଦା ।



## ଶ୍ରୀ ବିନୟ ରଞ୍ଜନ ପ୍ରଧାନ

ଶ୍ରୀବିନୟ ରଞ୍ଜନ ପ୍ରଧାନଙ୍କ ଜନ୍ମ ୧୯୪୫ ମସିହାରେ ସମ୍ବଲପୁର ଜିଲ୍ଲାର ବଡେପୁର ଗ୍ରାମରେ । ସପ୍ତମ ଶ୍ରେଣୀ ପାସ୍ କଲାପରେ ଅଧିକ ପଢିବା ସୁବିଧାରୁ ବଞ୍ଚିତ ହୋଇ ପୁସ୍ତକ ବ୍ୟବସାୟରେ ଲିପ୍ତହେଲେ । ନିଜର ବ୍ୟବସାୟ ଚଳାଇବା ସଙ୍ଗେ ସଙ୍ଗେ ୧୯୬୭ ମସିହାରୁ ଛୋଟ ଛୋଟ ଗଳ୍ପ, ପ୍ରବନ୍ଧ ଆଦି ଲେଖିବାରେ ହାତଦେଲେ । ତାଙ୍କର ଗଳ୍ପ ଗୁଡ଼ିକ ସାଧାରଣତଃ ଜୀବନ ଧର୍ମୀ ବାସ୍ତବ ବାଦ ଓ ବ୍ୟଙ୍ଗାତ୍ମକ ଚିନ୍ତାଧାରା ଉପରେ ପର୍ଯ୍ୟବେଶିତ । ସ୍ୱତନ୍ତ୍ର ଭାବେ ତାଙ୍କର କୌଣସି ପୁସ୍ତକ ପ୍ରକାଶ ପାଇନଥିଲେ ମଧ୍ୟ ବହୁ ପତ୍ର ପତ୍ରିକାରେ ଲେଖା ପ୍ରକାଶ ପାଇଛି । ଏକଦା ଶିଶୁ ମାନଙ୍କ ପାଇଁ ସାହିତ୍ୟ ସୃଷ୍ଟି କରି ପାଠକ ମହଲରେ ବିଶେଷ ଆଦୃତ ହୋଇ ପାରିଥିଲେ । ଓଡ଼ିଶାର ବିଭିନ୍ନ ସାହିତ୍ୟାନୁଷ୍ଠାନ ସହ ସେ ଜଡ଼ିତ । କିଛି କାଳ ପାଇଁ ବିଭିନ୍ନ ଓଡ଼ିଆ ପତ୍ରିକାରେ ସମ୍ବାଦଦାତା ଭାବେ ମଧ୍ୟ କାର୍ଯ୍ୟ ସମ୍ପାଦନ କରିଥିଲେ । ଶ୍ରୀ ପ୍ରଧାନଙ୍କ ଦ୍ୱାରା କୌଶଲ୍ୟା ସ୍ମୃତି ସ୍ମାରକ ସାହିତ୍ୟାନୁଷ୍ଠାନ ପରିଚାଳିତ । ଦୀର୍ଘ ୧୫ ବର୍ଷ ହେବ ସେ ମନମୁଣ୍ଡା

ଠାରେ ଅବସ୍ଥାନ କରି ଆସୁଛନ୍ତି ଓ ଏବେ ଜିଲ୍ଲାର ସାହିତ୍ୟାନୁଷ୍ଠାନ ସହ ସଂପୃକ୍ତ ଅଛନ୍ତି । ତାଙ୍କର ପିତା ଶ୍ରୀ ଲୋକନାଥ ପ୍ରଧାନ ଓ ମାତା ୰ କୌଶଲ୍ୟାଦେବୀ ।

×●×

## ଶ୍ରୀ ବେଣୁଧର ମିଶ୍ର

ଶ୍ରୀ ମିଶ୍ରଙ୍କ ଜନ୍ମ ଫୁଲବାଣୀ ଜିଲ୍ଲା ବୌଦ୍ଧଗଡରେ ତା ୨୨-୧୦-୧୯୨୭ ରେ । ପିତା ୰ ମାର୍କଣ୍ଡେୟ ମିଶ୍ର ଓ ମାତା ୰ ରାମେଶ୍ୱରୀ ମିଶ୍ର । ଶିକ୍ଷାଗତ ଯୋଗ୍ୟତା ୨ୟ ବାର୍ଷିକ କଳା । ସରକାରୀ ଚାକିରୀ ପରେ ଅବସର ନେଇ ସଂପ୍ରତି ବୌଦ୍ଧସ୍ଥ ନିଜ ବାସଭବନରେ କାଳାତିପାତ କରୁଛନ୍ତି । ସେ ୧୯୫୨ରୁ ଲେଖା ଲେଖି କରୁଛନ୍ତି । ଛନ୍ଦ କବିତା ରଚନାରେ ସେ ବିଶେଷ ସାଫଲ୍ୟ ଅର୍ଜନ କରି ପାରିଛନ୍ତି । ଜିଲ୍ଲା ଲେଖକ ସାମ୍ମୁଖ୍ୟ ପକ୍ଷରୁ ମାନପତ୍ର ପ୍ରାପ୍ତ । ଲେଖା ସଙ୍ଗେ ସଙ୍ଗେ ନାଟକରେ ସେ ଅଭିନୟ ମଧ୍ୟ କରିଥାନ୍ତି ।

—o—

## ଶ୍ରୀ ବିଶ୍ୱାମିତ୍ର ପୁରୋହିତ

ଶ୍ରୀ ପୁରୋହିତ ଙ୍କ ପିତା ୰ ଦୟାନିଧି ପୁରୋହିତ ଓ ମାତା ୰ ରାଧାରାଣୀ ପୁରୋହିତ । ଜନ୍ମ ସ୍ଥାନ ଫୁଲବାଣୀ ଜିଲ୍ଲା ବଉଦ ସବ ଡ଼ିଭିଜନର ପୁରୁଣା କଟକ ଗ୍ରାମରେ ତା ୫-୯-୧୯୪୭ ରେ । ଶିକ୍ଷାଗତ ଯୋଗ୍ୟତା ମାଟ୍ରିକୁଲେସନ ପାସ ।

୧୯୮୦ ରୁ ଲେଖା ଲେଖି ଆରମ୍ଭ କରିଛନ୍ତି ଓ ବିଶେଷ କରି ପ୍ରବନ୍ଧ, ନାଟକ ଓ କବିତା ରଚନା କରନ୍ତି । ତାଙ୍କର ପ୍ରକାଶିତ ତଥ୍ୟ ମୂଳକ ଆଲୋଚନା ପୁସ୍ତକ ଦେବୀ ଭୈରବୀ ୧୯୮୮ ରେ ପ୍ରକାଶିତ । ଏହି ପୁସ୍ତକଟି ଖୁବ୍ ଉଚ୍ଚକୋଟି ର ହୋଇଛି ଓ ପାଠକ ମାନଙ୍କ ଦ୍ୱାରା ବିଶେଷ ଭାବେ ଆଦୃତ ହୋଇ ପାରିଛି । ତାଙ୍କର ନାଟକ ପାଣ୍ଡୁଲିପି ' ମିଛ ମାଳମି ' ପ୍ରକାଶ ଅପେକ୍ଷାରେ । ଶ୍ରୀ ସୁରେନ୍ଦ୍ରତ ଏହି ଜିଲ୍ଲାର ସ୍ଥାୟୀ ବାସିନ୍ଦା । ତାଙ୍କର ବର୍ତ୍ତମାନ ଠିକଣା ଉପରକୋଲାବ ପାଓ୍ୱାର ପ୍ଲାଣ୍ଟ ଡ଼ିଭିଜନ ନଂ- ୨ ବାରେଣିପୁଟ ପୋ: କୋରାପୁଟ ।

—✽—

## ଶ୍ରୀ ଭଗବାନ ମହାକୁଳ

୧୯୩୧ ଜୁନ ମାସରେ ଫୁଲବାଣୀ ଜିଲ୍ଲା ଧଳପୁର ଗ୍ରାମରେ ଶ୍ରୀ ମହାକୁଳଙ୍କ ଜନ୍ମ । ତାଙ୍କ ପିତା ବୈଦ୍ୟନାଥ ମହାକୁଳ ଓ ମାତା ପ୍ରତିମା ଦେବୀ । ଶିକ୍ଷାଗତ ଯୋଗ୍ୟତା ୪ର୍ଥ ଶ୍ରେଣୀ । କୃଷି ଓ ଗୋପାଳନ ତାଙ୍କର କୌଳିକ ବ୍ୟବସାୟ ।

୧୯୬୫-୬୬ରୁ ସେ ଭକ୍ତିମୂଳକ ଭଜନ, ଜଣାଣ ଓ ନାଟକ ରଚନା କରୁଛନ୍ତି । ତାଙ୍କର କାନ୍ଧ ଅଭିଯାନ ପୁସ୍ତକ ପ୍ରକାଶ ଅପେକ୍ଷାରେ । ସେ ଏହି ଜିଲ୍ଲାର ସ୍ଥାୟୀ ବାସିନ୍ଦା ।

—○—

## ଶ୍ରୀ ଭବାନୀ ଶଙ୍କର ରାଉତ

ତା ୩୦ - ୪ - ୧୯୫୬ରେ ଫୁଲବାଣୀ ଜିଲ୍ଲା, କଣ୍ଡାମାଳ ଗ୍ରାମରେ ଜନ୍ମ । ପିତା ଶ୍ରୀ ସୋମନାଥ ରାଉତ ଓ ମାତା ଶ୍ରୀମତୀ କାଞ୍ଚନବାଳା ରାଉତ । ଶିକ୍ଷାଗତ ଯୋଗ୍ୟତା ଏମ୍: ଏ: । ବଳଦ ପଞ୍ଚାୟତ ମହାବିଦ୍ୟାଳୟରେ ଅଧ୍ୟାପକ ଭାବେ

କାର୍ଯ୍ୟ କରୁଛନ୍ତି । ସେ ୧୯୬୮ ରୁ କବିତା ଲେଖା ଆରମ୍ଭ କରି ଏ ପର୍ଯ୍ୟନ୍ତ ଶତାଧିକ ଉଚ୍ଚକୋଟିର କବିତା ସୃଷ୍ଟି କରି ପାରିଛନ୍ତି । ଏହି ଜିଲ୍ଲାର ଶ୍ରୀ ରାଉତ ଜଣେ ସ୍ଥାୟୀ ବାସିନ୍ଦା ।

—o—

## ଶ୍ରୀ ଭଗୀରଥି ମଣ୍ଡଳ

ଢେଙ୍କାନାଳ ଜିଲ୍ଲା ଭୁବନ ଗ୍ରାମରେ ତା ୧୫ - ୨ - ୧୯୩୬ ରେ ଶ୍ରୀ ମଣ୍ଡଳଙ୍କ ଜନ୍ମ । ପିତା ୰ ଧନେଶ୍ୱର ମଣ୍ଡଳ ଓ ମାତା ୰ ସୁଫଲତା ଦେବୀ । ମାଟ୍ରିକୁଲେସନ ଶିକ୍ଷା ସମାପ୍ତି ପରେ ରାଜ୍ୟ ସରକାରଙ୍କ ଅବକାରୀ ବିଭାଗରେ ଚାକିରୀ ଆରମ୍ଭ କରନ୍ତି । ବର୍ତ୍ତମାନ ବଉଦରେ ଅବକାରୀ ନିରୀକ୍ଷକ ଭାବେ କାର୍ଯ୍ୟରତ । ୧୯୪୮ ମସିହା ଛାତ୍ରାବସ୍ଥାରୁ ସେ କବିତା ଓ ଗଳ୍ପ ଲେଖା ଆରମ୍ଭ କରିଛନ୍ତି । ତାଙ୍କର ଗଳ୍ପ କବିତା ଝଙ୍କାର, ଆସନ୍ତା କାଲି, ଜନତା ନଗର ଓ ରବିବାସରୀୟ ପ୍ରଜାତନ୍ତ୍ର ଇତ୍ୟାଦିରେ ବହୁବାର ପ୍ରକାଶିତ । ଶ୍ରୀ ମଣ୍ଡଳଙ୍କ ଅନ୍ତଃସ୍ରୋତ ନାମକ କବିତା ସଂକଳନର ପାଣ୍ଡୁଲିପି ଖୁବ୍ ଶୀଘ୍ର ପ୍ରକାଶ ପାଇବାକୁ ଯାଉଛି ।

—o—

## ଶ୍ରୀ ଭାସ୍କର ପାତ୍ର

ତା ୧୬ । ୧୦ । ୧୯୪୦ ରେ ଗଞ୍ଜାମ ଜିଲ୍ଲା ଭଞ୍ଜନଗରରେ ଶ୍ରୀ ପାତ୍ରଙ୍କ ଜନ୍ମ । ପିତା ୰ ଦାମୋଦର ପାତ୍ର ଓ ମାତା ପଦ୍ମାବତୀ ପାତ୍ର । ଶିକ୍ଷାଗତ ଯୋଗ୍ୟତା ଏମ୍. ଏ. ବି. ଇଡ଼. ରାଷ୍ଟ୍ରଭାଷା କୋବିଦ । ଛାତ୍ରାବସ୍ଥାରୁ ଗଳ୍ପ; ପ୍ରବନ୍ଧ; କବିତା ଲେଖୁଛନ୍ତି ଓ ସେ ଜଣେ ସୁବକ୍ତା ମଧ୍ୟ । ବର୍ତ୍ତମାନ ବଉଦ ନେ. ଭ. ହାଇସ୍କୁଲରେ ସହକାରୀ ଶିକ୍ଷକ ଭାବେ କାର୍ଯ୍ୟ ସମ୍ପାଦନ କରୁଛନ୍ତି । ତାଙ୍କର ଅନେକ ଗୁଡ଼ିଏ ଗଳ୍ପ ଓ କବିତା ଅପ୍ରକାଶିତ ଅବସ୍ଥାରେ ରହିଛି । ବିଭିନ୍ନ ଶିକ୍ଷାନୁଷ୍ଠାନ ଦ୍ୱାରା ଆୟୋଜିତ ସାଂସ୍କୃତିକ କାର୍ଯ୍ୟକ୍ରମରେ ସେ ଯୋଗ ଦିଅନ୍ତି । ଫୁଲବାଣୀ ଜିଲ୍ଲାରେ ସେ ଗତ ୧୫ ବର୍ଷରୁ ଉର୍ଦ୍ଧ୍ୱ ବର୍ଷ ଧରି ରହି ଆସୁଛନ୍ତି ।



# ଶ୍ରୀ ମନୋରଞ୍ଜନ ମିଶ୍ର

ଶ୍ରୀ ମନୋରଞ୍ଜନ ମିଶ୍ର ବଲାଙ୍ଗୀର ସହରରେ ତା ୩୧-୭-୧୯୪୮ ରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତା ଶ୍ରୀ ଗୋପିନାଥ ମିଶ୍ର ଓ ମାତା ଂକମଳା ମିଶ୍ର । ଏମ୍. ଏ. ପାସ୍ କଲାପରେ ବ୍ୟବସାୟ କରୁଛନ୍ତି ଓ ପ୍ରଜାତନ୍ତ୍ରର ବଲାଙ୍ଗୀର ପ୍ରତିନିଧି ଅଛନ୍ତି । ଗଳ୍ପ, କବିତା, ପ୍ରବନ୍ଧ, ନାଟକ ଆଦି ରଚନା କରନ୍ତି । ଶ୍ରୀ ମିଶ୍ର ଫୁଲବାଣୀ ଜିଲ୍ଲାର ସ୍ଥାୟୀ ବାସିନ୍ଦା ।

—o—

# ଶ୍ରୀ ମହେଶ୍ୱର ମହାକୁଲ

ଶ୍ରୀ ମହାକୁଲଙ୍କ ଜନ୍ମ ଫୁଲବାଣୀ ଜିଲ୍ଲା, ମଦନମୁଣ୍ଡା ଥାନା ଗୁଡ଼ଭେଲାପଦର ଗ୍ରାମରେ ତା ୯ । ୫ । ୧୯୬୭ ରେ । ତାଙ୍କର ପିତା ଚନ୍ଦ୍ରଶେଖର ମହାକୁଲ ଓ ମାତା ବେଙ୍ଗ ଦେଇ । ବି. ଏ. ଏଲ୍. ଏଲ୍ ବି. ଶିକ୍ଷା ସମାପ୍ତି ପରେ ଆଇନଜୀବୀ ଭାବେ କାର୍ଯ୍ୟ କରୁଛନ୍ତି । ପ୍ରାୟ ୧୯୫୦-୫୧ ରୁ ଗଳ୍ପ, କବିତା, ଉପନ୍ୟାସ ରଚନା କରୁଛନ୍ତି । ତାଙ୍କର ପ୍ରକାଶିତ ସାମାଜିକ ଉପନ୍ୟାସ ' ଆକ୍ସିଡେଣ୍ଟ ' ପାଠକ ମହଲରେ ବିଶେଷ ଭାବେ ଆଦୃତ । ଅନ୍ୟ ଏକ ସାମାଜିକ ଉପନ୍ୟାସ ଧାରାର ଲୁହ ପ୍ରକାଶ ଅପେକ୍ଷାରେ । ବିଭିନ୍ନ ସମୟରେ ବିଭିନ୍ନ ପତ୍ର ପତ୍ରିକାରେ ତାଙ୍କର ଅନେକ ଲେଖା ପ୍ରକାଶ ପାଏ । ବିଭିନ୍ନ ସାଂସ୍କୃତିକ କାର୍ଯ୍ୟକ୍ରମରେ ସେ ଅଂଶ ଗ୍ରହଣ କରନ୍ତି ।

—o—

# ଶ୍ରୀ ରଘୁନାଥ ରଥ

ଶ୍ରୀ ରଥଙ୍କର ଜନ୍ମ ତା ୨୩।୮।୧୯୨୫ ରେ ଗଞ୍ଜାମ ଜିଲ୍ଲା ଘୁମୁସର ସବ୍‌ଡ଼ିଭିଜନ ଅନ୍ତର୍ଗତ ଶ୍ରୀକରପୁର ଶାସନରେ । ତାଙ୍କର ପିତା କାଶୀନାଥ ରଥ ଓ ମାତା ସ୍ୱର୍ଗତା ହେମଲତା ରଥ । ସେ ମାଟ୍ରିକ୍ୟୁଲେସନ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାପରେ ଓଡ଼ିଶା ରାଜ୍ୟ ସରକାରଙ୍କ ରାଜସ୍ୱ ବିଭାଗ ଅଧୀନରେ ଫୁଲବାଣୀ ଜିଲ୍ଲାରେ ୧୯୭୪ ଠାରୁ କାର୍ଯ୍ୟରତ । ପଞ୍ଚମ ଶ୍ରେଣୀରେ ଅଧ୍ୟୟନ କରୁଥିବା ସମୟରୁ କବିତା ଓ କ୍ଷୁଦ୍ର ଗଳ୍ପ ଲେଖିବା ଆରମ୍ଭ କରନ୍ତି ଓ ବର୍ତ୍ତମାନ କବିତା, ଗଳ୍ପ, ପ୍ରବନ୍ଧ, ଆଲୋଚନା ଆଦି ଇତ୍ୟାଦି ରଚନା କରି ଚାଲିଛନ୍ତି । ଶ୍ରୀ ରଥଙ୍କ କବିତା, ଗଳ୍ପ ଓ ପ୍ରବନ୍ଧ ଆଦି ବାର୍ତ୍ତାଳର୍ମି, ଶାମୁକା, ଚନ୍ଦ୍ରଭାଗା, ଏକାନ୍ତ, ତଦାଗ, ବନମାଳା, ବାଣୀ ସଂବାଦ୍, ବଜ୍ରଦ, ପଲ୍ଲୀ ସ୍ୱପ୍ନ, ଅରଣ୍ୟ, ଅପରାହ୍ନ, ଏବଂ, ବିଶ୍ୱାସ, ଝରଣା, ଝର୍ଝର, ନବଲିପି, ମଶାଲ; ଗୋଷ୍ଠୀରଚନା; ଲିପିହିତା, ଭଞ୍ଜବାଣୀ, ଧୂଳିଘର, ସଜଫୁଲ, ଦେବ ପଥ, ଦୈନିକ ଆଶା, ଆସନ୍ତା କାଲି, ଗଣଧନ, ବୈଚିତ୍ର୍ୟ, ଦେ, ସଙ୍କେତ, ପଲ୍ଲୀ ବନ୍ଧୁ, ମିଠା ଖଟା ସନ୍ଦେଶ ସତ୍ତା ଇତ୍ୟାଦି ଆହୁରି ଅନେକ ପତ୍ରିକାରେ ପ୍ରକାଶ ପାଇଛି । ଶ୍ରୀ ରଥଙ୍କର ଏକ ବିଶେଷ କୃତିତ୍ୱ ଯେ, ତାଙ୍କ ଦ୍ୱାରା ସମ୍ପାଦିତ ଓଡ଼ିଆ ଶିଶୁ 'ସାହିତ୍ୟ ପତ୍ରିକା ପରିଚୟ' ୧୯୮୭ ଓଡ଼ିଶା ଶିଶୁ ସାହିତ୍ୟ ଏକାଡେମୀ ତରଫରୁ କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର ଦ୍ୱାରା ପ୍ରକାଶିତ । ବର୍ତ୍ତମାନ କନ୍ଧ ସଂସ୍କୃତିର ସମସ୍ତ ଦିଗ ଉପରେ ସେ ଗବେଷଣା ରତ ଓ ୧୯୮୮ ରେ କଟକ ଠାରେ ଅନୁଷ୍ଠିତ ଇଣ୍ଟର ନ୍ୟାସନାଲ ସେମିନାର ଅନ୍ ଟ୍ରାଇବାଲ କଲଚର ଇନ୍ ଦି ଚେଞ୍ଜିଙ୍ଗ ୱାର୍ଲ୍ଡ ରେ ଯୋଗ ଦେଇ କନ୍ଧ ସଂସ୍କୃତି ଉପରେ ତଥ୍ୟ ମୂଳକ ପ୍ରବନ୍ଧ ଉପସ୍ଥାପନ । ସେ ଫୁଲବାଣୀ ଜିଲ୍ଲା ଲେଖକ ପରିଷଦର ସହ ସଂପାଦକ ଓ ମାସିକ ସାହିତ୍ୟ ପତ୍ରିକା ଆରଣ୍ୟର ସୌଜନ୍ୟ ସଂପାଦକ । ବନ୍ଧୁଦ ଇତିହାସ

ଓ ଲୋକ ସାହିତ୍ୟ ଉପରେ ତଥ୍ୟ ସଂଗ୍ରହରେ ବ୍ୟାପୃତ । ଓଡ଼ିଶାର ବିଭିନ୍ନ ସାହିତ୍ୟ ସଂସ୍କୃତି ପ୍ରତିଷ୍ଠାନ ସହ ସଂପୃକ୍ତ ଓ ବିଭିନ୍ନ ସାହିତ୍ୟ ଆସରରେ ଯୋଗଦାନ । ଏହି ଜିଲ୍ଲାର ସାହିତ୍ୟ ସଂସ୍କୃତି ଓ ଇତିହାସର ଗବେଷଣା ଓ ସୁରକ୍ଷା ଦିଗରେ ସତତ କାର୍ଯ୍ୟରତ । ହାଇସ୍କୁଲରେ ପ୍ରବନ୍ଧ, ଗଳ୍ପ ଓ କବିତା ପ୍ରତିଯୋଗିତାରେ ଦୁଇ ବର୍ଷ ପ୍ରଥମ ପୁରସ୍କାର ପ୍ରାପ୍ତ ଓ ହାଇସ୍କୁଲର ମୁଖପତ୍ର ମିହିରର ସଂପାଦନା ମଣ୍ଡଳୀର ସଭ୍ୟ ଥିଲେ । ତାଙ୍କର ଅପ୍ରକାଶିତ ପାଣ୍ଡୁଲିପି ସମୂହ :— ୧- କଣା ଅଜା ( ଓଡ଼ିଶାର ବିଖ୍ୟାତ ସଂଗ୍ରାହକ ଦାଶରଥୀ ପଟ୍ଟନାୟକଙ୍କ ଜୀବନୀ ) ; ୨- ଲୋକ ଦେବୀ ଭୈରବୀ ( ତଥ୍ୟ ମୂଳକ ଆଲୋଚନା ସନ୍ଦର୍ଭ ) । ୩- କନ୍ଧ ସଂସ୍କୃତି ଉପରେ ଦଶଟି ପାଣ୍ଡୁଲିପି । ୪- ଭଞ୍ଜବଂଶର ସୃଷ୍ଟି ରହସ୍ୟ; ( ଐତିହାସିକ ସନ୍ଦର୍ଭ ) ଓ ଅନ୍ୟାନ୍ୟ । ଶ୍ରୀ ରଥ ବର୍ତ୍ତମାନ ଏହି ଜିଲ୍ଲାର ସ୍ଥାୟୀ ବାସିନ୍ଦା । ତାଙ୍କର ବର୍ତ୍ତମାନ ଠିକଣା ସା/ପୋ. ପୁରୁଣାକଟକ ଜି: ଫୁଲବାଣୀ ।

—୦—

## ଶ୍ରୀ ରଜନୀକାନ୍ତ ଦାଶ

ତା ୮ । ୩ । ୧୯୪୪ ରେ ବଉଦ ଉପଖଣ୍ଡରେ ଶ୍ରୀ ଦାଶଙ୍କ ଜନ୍ମ । ପିତା ଶ୍ରୀ ବାଳମୁକୁନ୍ଦ ଦାଶ ଓ ମାତା ଶ୍ରୀମତୀ ହେମଲତା ଦାଶ । ଶିକ୍ଷାଗତ ଯୋଗ୍ୟତା ବି. ଏ. [ଅକୃତ କାର୍ଯ୍ୟ] । ୧୯୬୭ ରୁ ଲେଖା ଲେଖି ପ୍ରତି ମନ ବଳାଇ ବହୁ ସଂସ୍କାର ମୂଳକ କବିତା, ପ୍ରବନ୍ଧ ଆଦି ରଚନା କରିଛନ୍ତି । ‘ ଅଦାଲତ ’ ନାମକ ସମାଲୋଚନା ମୂଳକ ପ୍ରବନ୍ଧ ଗୁଚ୍ଛର ପାଣ୍ଡୁଲିପି ପ୍ରକାଶ ଅପେକ୍ଷାରେ । ତାଙ୍କର ବ୍ୟବସାୟ ସାମ୍ବାଦିକତା । ବର୍ତ୍ତମାନ ସେ ସମ୍ବାଦ; ଝାଡ଼ଖଣ୍ଡ, ଦୈନିକ ଆଶା ମାତୃଭୂମି ଓ ସ୍ୱରାଜ୍ୟ ଦୈନିକ ଓଡ଼ିଆ ପତ୍ରିକା ଗୁଡ଼ିକ ନିମନ୍ତେ ବଉଦ ଉପଖଣ୍ଡ ସ୍ତରୀୟ ପ୍ରତିନିଧିତ୍ୱ କରୁଛନ୍ତି ।

—୦—

## ଶ୍ରୀ ରବୀନ୍ଦ୍ରନାଥ ଜେନା

ଶ୍ରୀ ରବୀନ୍ଦ୍ରନାଥ ଜେନା ତା ୧ । ୪ । ୧୯୫୪ ରେ ପୁରୀ ଜିଲ୍ଲା ନୟାଗଡ଼ ନିକଟସ୍ଥ ଶିମିଳପାଡ଼ାରେ ଜନ୍ମଲାଭ କରିଛନ୍ତି । ତାଙ୍କର ପିତା ଶଙ୍କର୍ଷଣ ଜେନା ଓ ମାତା ଉମୀଦେଇ । ଓଡ଼ିଆରେ ଏମ୍. ଏ. ବି. ଇଡ୍. କଲାପରେ ଶିକ୍ଷକତା କରୁଛନ୍ତି ଓ ଏବେ ବଉଦର ଯୋଗେନ୍ଦ୍ରଦେବ ଉଚ୍ଚ ଇଂରାଜୀ ବିଦ୍ୟାଳୟରେ କାର୍ଯ୍ୟ କରୁଛନ୍ତି । ୧୯୭୮ ରୁ ସେ କବିତା ଓ ଗଳ୍ପ ରଚନା କରୁଅଛନ୍ତି । ୧୯୮୫ ରୁ ସେ ଏହି ଫୁଲବାଣୀ ଜିଲ୍ଲାରେ ରହି ଆସୁଛନ୍ତି ।

—o—

## ଶ୍ରୀ ରାଜେନ୍ଦ୍ର କୁମାର ମିଶ୍ର

ତା ୨୫ । ୯ । ୧୯୬୧ ରେ ଶ୍ରୀ ମିଶ୍ରଙ୍କର ଜନ୍ମ ହୁଏ ଫୁଲବାଣୀ ଜିଲ୍ଲା ବଉଦର ବାବୁସାହିରେ । ସ୍ନାତକୋତ୍ତର [ଜୀବ ବିଜ୍ଞାନ] [ଏମ୍. ଏସ୍‌ସି. ଏଲ୍. ଏସ୍ ସି.] ଶିକ୍ଷା ସମାପ୍ତି ପରେ ଶିକ୍ଷକତା କରୁଛନ୍ତି । ସଂପ୍ରତି ବଉଦର ଯୋଗେନ୍ଦ୍ରଦେବ ଉଚ୍ଚ ଇଂରାଜୀ ବିଦ୍ୟାଳୟରେ କାର୍ଯ୍ୟ ସଂପାଦନ କରୁଛନ୍ତି । ଖୁବ୍ କମ୍ ଦିନ ହେଲା କବିତା ରଚନାରେ ସେ ମନ ନିବେଶ କରିଛନ୍ତି । ସେ ଏହି ଜିଲ୍ଲାର ସ୍ଥାୟୀ ବାସିନ୍ଦା ।

×●×

## ଶ୍ରୀ ରାମଚନ୍ଦ୍ର ପଣ୍ଡା

ଫୁଲବାଣୀ ଜିଲ୍ଲା ଧଳପୁର ନିକଟସ୍ଥ ଖରସକୁଲେଇ ଗ୍ରାମରେ ତା ୨୭-୪-୧୯୬୭ ରେ ଶ୍ରୀ ପଣ୍ଡାଙ୍କର ଜନ୍ମ । ତାଙ୍କ ପିତାଙ୍କ ନାମ ଶରତ ଚନ୍ଦ୍ର ପଣ୍ଡା ଓ ମାତା ସହାବଣ୍ଣ ପଣ୍ଡା । ଶ୍ରୀ ପଣ୍ଡା କଳାସ୍ନାତକ ହିସାବରେ ତିନି ବର୍ଷ

ଅଧ୍ୟାପନ କଲାପରେ ପାଠ ପଢ଼ା ଛାଡ଼ି ଲେଖା ପ୍ରତି ଦୃଷ୍ଟି ଦେଲେ । ୧୯୭୦ ରୁ ଲେଖା ଆରମ୍ଭ କରିଛନ୍ତି ଓ ବିଶେଷ କରି ଶିଶୁ ଉପଯୋଗୀ ଗଳ୍ପ, କବିତା ସୃଷ୍ଟି କରିବାରେ ପାରଦର୍ଶିତା ଲାଭ କରି ପାରିଛନ୍ତି । ଆଧୁନିକ ଗଳ୍ପ, କବିତା, ଆଲୋଚନା, ରମ୍ୟ ରଚନା ମଧ୍ୟ ସେ ସୃଷ୍ଟି କରି ପାରନ୍ତି । ବିଭିନ୍ନ ଓଡ଼ିଆ ପତ୍ର ପତ୍ରିକାରେ ତାଙ୍କ ଲେଖା ଅନେକ ସମୟରେ ପ୍ରକାଶ ପାଇଛି । ତାଙ୍କର ଅପ୍ରକାଶିତ ଲେଖା ଆମ ଜହ୍ନ ଗଛେ, ଟିକିଏ ହସ ଓ ପଙ୍କଜ । ସେ ସାହିତ୍ୟ ସଂସ୍କୃତିର ପ୍ରସାର ଓ ସୁରକ୍ଷା ନିମନ୍ତେ ନିଜ ଗ୍ରାମରେ ଏକ ପାଠାଗାର ସ୍ଥାପନ କରି ତାହାର ପରିଚାଳନା ଦାୟିତ୍ୱ ବହନ କରିଛନ୍ତି । ଜିଲ୍ଲାର ବିଭିନ୍ନ ସାହିତ୍ୟାନୁଷ୍ଠାନ ସହ ସଂପୃକ୍ତ । ୧୯୮୭ ରେ ତାଙ୍କର ଶିଶୁ ସାହିତ୍ୟ କୃତି ନିମନ୍ତେ କେନ୍ଦୁଝରସ୍ଥ ଫୁଲଚନ୍ଦନ ଶିଶୁ ସାହିତ୍ୟ ପତ୍ରିକା ପ୍ରକାଶନ ସଂସ୍ଥା ପକ୍ଷରୁ ସମ୍ମାନିତ ଓ ଓଡ଼ିଆ ଶିଶୁ ସାହିତ୍ୟ ଗବେଷଣା କେନ୍ଦ୍ର ଦ୍ୱାରା ମଧ୍ୟ ସମ୍ମାନିତ । ଭାରତ ସରକାରଙ୍କ କ୍ଷେତ୍ର ପ୍ରଚାର ଓ ସୂଚନା ମନ୍ତ୍ରାଳୟ ତରଫରୁ ମନୋନୀତ ହୋଇ ୧୯୮୪ ରେ ଉତ୍ତର ଭାରତ ଭ୍ରମଣ କରିଥିଲେ ।

—୦—

## ଶ୍ରୀ ରାଜେନ୍ଦ୍ର ପ୍ରସାଦ ଦେଓ

ଫୁଲବାଣୀ ଜିଲ୍ଲା ତିକେଶ୍ୱର ନିକଟସ୍ଥ କୁଟୁଣିଆ ପଡ଼ାରେ ତା ୭ । ୧୦ । ୧୯୬୦ ରେ ଜନ୍ମ । ପିତା ୰ ସଚ୍ଚିଦାନନ୍ଦ ଦେଓ । ଏମ୍. ଏ. ଏଲ୍. ଏଲ୍. ବି. କରିବା ପରେ ଓକିଲାତି କରୁଛନ୍ତି । କ୍ଷୁଦ୍ର ଗଳ୍ପ, କବିତା ଓ ପ୍ରବନ୍ଧ ଲେଖନ୍ତି । ୧୯୭୪ ମସିହାରୁ ଲେଖା ଲେଖି ଆରମ୍ଭ କରିଛନ୍ତି । ବର୍ତ୍ତମାନର ଠିକଣା ଅମଲାପଡ଼ା ପୋ: ଫୁଲବାଣୀ ।

—୦—

## ଶ୍ରୀ ରଣପ୍ରତାପ ବାନାର୍ଜୀ

ତା ୮ । ୨ । ୧୯୫୧ ରେ ହରଭଙ୍ଗା ଥାନା କୁମାଶ ଗ୍ରାମରେ ରଣପ୍ରତାପ ବାନାର୍ଜୀଙ୍କ ଜନ୍ମ । ତାଙ୍କର ପିତା ଶ୍ରୀ ରାଧିକା ପ୍ରସାଦ ବାନାର୍ଜୀ ଓ ମାତା ଶ୍ରୀମତୀ ବକୁଳରାଣୀ ବାନାର୍ଜୀ । ଶିକ୍ଷାଗତ ଯୋଗ୍ୟତା ସ୍ନାତକ କଳା । ୧୯୬୫-୬୭ ଛାତ୍ରାବସ୍ଥାରୁ ଲେଖା ପ୍ରତି ଆଗ୍ରହ ଜନ୍ମେ ଓ ବିଶେଷ କରି ଛନ୍ଦ କବିତା ସୃଷ୍ଟିରେ ମନ ବଳାନ୍ତି । ବନମାଳା ପୁସ୍ତକରେ ତାଙ୍କର ବହୁ କବିତା ପ୍ରକାଶିତ । ଲେଖିବା, ପଢିବା ଓ ନାଟକରେ ଅଂଶ ଗ୍ରହଣ କରିବାରେ ଶ୍ରୀ ବାନାର୍ଜୀଙ୍କ ଆଗ୍ରହ ରହିଛି ।

— ୦ —

## ଶ୍ରୀ ଶ୍ୟାମଘନ ମହାନନ୍ଦିଆ

ଫୁଲବାଣୀ ଜିଲ୍ଲା କରଡ ନିକଟସ୍ଥ ମହୁଲବୁର ଗ୍ରାମରେ ୧୯୨୫ ସାଲ ଆଷାଢ ଶୁକ୍ଳ ଦଶମୀରେ ଶ୍ରୀ ମହାନନ୍ଦିଆଙ୍କ ଜନ୍ମ । ବ୍ୟବସାୟ କୃଷି । ଦଣ୍ଡ ନୃତ୍ୟରେ ପୌରାଣିକ ଓ ଆଧୁନିକ ଗୀତ ରଚନା କରନ୍ତି । ଦଣ୍ଡ ରହସ୍ୟ, ଶାନ୍ତି ଭଜନାଞ୍ଜଳି; ଦଅର ଭଜନ, ଦୁଇ ସଜଡୁଣୀ ଇତ୍ୟାଦି ପୁସ୍ତିକା ଶ୍ରୀ ମହାନନ୍ଦିଆଙ୍କର ପ୍ରକାଶିତ । ସେ ଏହି ଜିଲ୍ଲାର ସ୍ଥାୟୀ ବାସିନ୍ଦା ।

— ୦ —

## ଶ୍ରୀ ଶେଷଦେବ ବେହେରା

ତା ୨୮ । ୭ । ୧୯୫୫ ରେ କନ୍ଧମାଳ ନିକଟସ୍ଥ ଗୁଣୁଟିତର ଗ୍ରାମରେ ଶ୍ରୀ ବେହେରାଙ୍କର ଜନ୍ମ । ପିତା ଭାସ୍କର ବେହେରା ଓ ମାତା ଶ୍ରୀମତୀ କସ୍ତୁରୀ ବେହେରା । ତାଙ୍କର ଶିକ୍ଷାଗତ ଯୋଗ୍ୟତା ବି: ଏ: ( ଡିଷ୍ଟିଙ୍କସନ୍ ) ସମ୍ଭ୍ରଦା ରହି । ବର୍ତ୍ତମାନ ଯୋଗୀନ୍ଦ୍ରଦେବ ଉଚ୍ଚ ଇଂରାଜୀ ବିଦ୍ୟାଳୟ (ବଉଦ) ରେ ବୃଦ୍ଧ ଶିକ୍ଷକ ଭାବେ କାର୍ଯ୍ୟ କରୁଛନ୍ତି । ୧୯୭୨ ମସିହାରୁ ସେ କବିତା ଲେଖା ଆରମ୍ଭ କରିଛନ୍ତି । ବିଭିନ୍ନ ସାଂସ୍କୃତିକ ଆସରରେ ଯୋଗ ଦେବା ତାଙ୍କର ଅନ୍ୟ ଏକ ରୁଚି ।

— ✿ —

## ଶିଶିର କୁମାର ଆଚାର୍ଯ୍ୟ

ତା ୪ - ୭ - ୧୯୫୮ ରେ ଗଞ୍ଜାମ ଜିଲ୍ଲା ଆସ୍କା (ମୁନାମୁସାହି) ରେ ଜନ୍ମ । ପିତା ଶ୍ରୀ ଦଣ୍ଡପାଣି ଓ ମାତା ଶ୍ରୀମତୀ ରତ୍ନ ମାଳା । ଶିକ୍ଷାଗତ ଯୋଗ୍ୟତା ଏମ୍ ଏ । ପେଶା – ସରକାରୀ ଚାକିରୀ । ୧୯୭୮ ରୁ କବିତା ଗଳ୍ପ ଓ ପ୍ରବନ୍ଧ ରଚନା କରୁଛନ୍ତି । ୧୯୮୪ ରୁ ଏହି ଜିଲ୍ଲାରେ ରହିଛନ୍ତି ବର୍ତ୍ତମାନ ସେ ବଉଦ ସହରରେ ଅବସ୍ଥାନ କରୁଛନ୍ତି ।

* ○ *

## ଶ୍ରୀନିବାସ ପଟ୍ଟନାୟକ

ସନ୍ ୧୯୩୭ ମସିହାରେ ବଉଦର ଗିରସିଙ୍ଗା ଗ୍ରାମରେ ଶ୍ରୀ ପଟ୍ଟନାୟକଙ୍କ ଜନ୍ମ । ପିତା ୰ ଆର୍ତ୍ତବନ୍ଧୁ ପଟ୍ଟନାୟକ ଓ ମାତା ନଗାମଣି ଦେଈ । ବର୍ତ୍ତମାନ ବଉଦର ବାବୁସାହିରେ ଅବସ୍ଥାନ କରୁଛନ୍ତି ଓ କୃଷି କାର୍ଯ୍ୟ ତଦାରଖ କରୁଛନ୍ତି । ଶିକ୍ଷାଗତ ଯୋଗ୍ୟତା ଅଷ୍ଟମ ଶ୍ରେଣୀ । ୧୯୬୨ ରୁ ସମାଲୋଚନା ମୂଳକ କବିତା; ଗଳ୍ପ ପ୍ରଭୃତି ରଚନା କରୁଛନ୍ତି । ତାଙ୍କର କେତେକ ଉଚ୍ଚ କୋଟିର ଲେଖା ସ୍ଥାନୀୟ ସାପ୍ତାହିକ ପତ୍ର 'ମର୍ମ' ରେ ପ୍ରକାଶିତ । ଏକ କବିତା ସଙ୍କଳନ ପ୍ରକାଶ ଅପେକ୍ଷାରେ । ବିଭିନ୍ନ ସାଂସ୍କୃତିକ କାର୍ଯ୍ୟକ୍ରମରେ ସେ ଅଂଶ ଗ୍ରହଣ କରନ୍ତି ଓ ନିଜର ବକ୍ତବ୍ୟ କବିତା ମାଧ୍ୟମରେ ହିଁ ପ୍ରକାଶ କରିଥାନ୍ତି ।

—○—

## ଶ୍ରୀ ସତ୍ୟନାରାୟଣ ସାହୁ

ଶ୍ରୀ ସତ୍ୟନାରାୟଣ ସାହୁଙ୍କ ଜନ୍ମ ତା ୫ । ୭ । ୧୯୫୪ ରେ ଫୁଲବାଣୀ ଜିଲ୍ଲାସ୍ଥ ଦରଭଙ୍ଗା ଥାନା ଦରଭଙ୍ଗା ଗ୍ରାମରେ । ତାଙ୍କର ପିତା କେଶବ ଚନ୍ଦ୍ର ସାହୁ ଓ ମାତାଙ୍କ ନାମ ରଜନୀ ରାଣୀ ସାହୁ । ଅର୍ଥ ଶାସ୍ତ୍ରରେ ସ୍ନାତକ ଶିକ୍ଷା ସମାପ୍ତି ପରେ ବ୍ୟାଙ୍କ ସେବାରେ ଅବସ୍ଥାପିତ । ବର୍ତ୍ତମାନ ଶ୍ରୀ ସାହୁ ଫୁଲବାଣୀ ଜିଲ୍ଲା ଚକାପାଦ ଗ୍ରାମରେ କାର୍ଯ୍ୟରତ । ଗଳ୍ପ, କବିତା ନାଟକ ରଚନା କ୍ଷେତ୍ରରେ ତାଙ୍କର ପାରଦର୍ଶିତା ସେ ପ୍ରଦର୍ଶନ କରିପାରିଛନ୍ତି । ସାହିତ୍ୟ ପତ୍ରିକା ଏକାମ୍ର, ଆମେ, ଜ୍ୟୋତ୍ସ୍ନା ସଂକଳନରେ ତାଙ୍କର ବହୁ ଲେଖା ପ୍ରକାଶିତ ଓ ତାଙ୍କଦ୍ୱାରା କବିତା ସଂକଳନ " ବିମୁକ୍ତ ଆକାଶ ବିଶୀର୍ଣ୍ଣ ମେଘର କବିତା " ପାଠକ ମହଲରେ ବିଶେଷ ଆଦୃତ । ଶ୍ରୀ ସାହୁଙ୍କ ଅପ୍ରକାଶିତ ଲେଖା ସମୂହ - କନକ ରତ୍ନ (ଉପନ୍ୟାସ) , ଆଜିର ଦୁନିଆ (ଗ), ଫାଶି ଆସାମୀ (ଗ), ଚଣ୍ଡୀଶାଳ [ନାଟକ] ସାମାଜିକ, ପ୍ରଶ୍ନବାଚୀ ମାୟାବଜାର, ବିଶ୍ୱ ଖେଳ ଏକାଙ୍କିକା [ସମସ୍ତ ନାଟକ] ପାରଳାଖେମୁଣ୍ଡିସ୍ଥ ସୁଲେଖା ସାହିତ୍ୟ ସଂସଦର ପ୍ରତିଷ୍ଠାତା ଓ କଳାବିକାଶ ପରିଷଦର ସେ ଉପଦେଷ୍ଟା । ଶ୍ରୀ ସାହୁ ଯୁବ ଲେଖକ ସାମ୍ମୁଖ୍ୟ ଓ ଏକାମ୍ର ସାହିତ୍ୟ ସଂସଦର ସଭ୍ୟ ଅଛନ୍ତି । ନାଟକରେ ଅଭିନୟ କରିବା, ନିର୍ଦ୍ଦେଶନା ଦେବା ଓ ସଙ୍ଗୀତ ପରିବେଷଣ କରିବାରେ ଶ୍ରୀ ସାହୁଙ୍କର ବିଶେଷ ଅଭିଜ୍ଞତା ମଧ୍ୟ ରହିଛି । ସେ ଜଣେ ସାହିତ୍ୟ ସମାଲୋଚକ ଓ ସୁ ବକ୍ତା ।

●

## ଶ୍ରୀ ସତ୍ୟ ମେହେର

ସତ୍ୟ କୁମାର ମେହେର ଙ୍କ ଜନ୍ମ ବଉଦ ଉପଖଣ୍ଡସ୍ଥ ଗଜରାଜପୁର [ ପୋ: ଅଁଳପାଳ ] ଗ୍ରାମ ରେ ତା ୨୫ - ୪ - ୧୯୫୭ ରେ । ପିତା ଅନାମ୍ବର ମେହେର । ଶିକ୍ଷା ଗତ ଯୋଗ୍ୟତା ମେ: । ତାଙ୍କର କ୍ଷୁଦ୍ରଗଳ୍ପ ଓ କବିତା କେତେକ ପତ୍ର ପତ୍ରିକାରେ ପ୍ରକାଶିତ । ଏହି ଜିଲ୍ଲାର ସେ ବାସିନ୍ଦା ।

●

## ଶ୍ରୀ ସନ୍ତୋଷ କୁମାର ଷଣି

ଶ୍ରୀ ସନ୍ତୋଷ କୁମାର ଷଣିଙ୍କ ଜନ୍ମ ତା ୧୦।୧।୧୯୬୧ ରେ ବଉଦ ସହରରେ । ତାଙ୍କର ପିତା ଶ୍ରୀ ଶ୍ୟାମଶଙ୍କର ଷଣି ଓ ମାତା ଶ୍ରୀମତୀ ସୁଶୀଳା ଷଣି । ଶିକ୍ଷାଗତ ଯୋଗ୍ୟତା ଏମ୍. ଏ. । ବର୍ତ୍ତମାନ କଣ୍ଟାମାଳ ପଞ୍ଚାୟତ ମହାବିଦ୍ୟାଳୟରେ ଅଧ୍ୟାପକ ଭାବେ ଅବସ୍ଥାପିତ । ଏହି ଯୁବ କବି ୧୯୭୮ ରୁ ଅଧିକାଂଶ କବିତା ରଚନା କରିବା ସଙ୍ଗେ ସଙ୍ଗେ ଉଚ୍ଚକୋଟୀର ପ୍ରବନ୍ଧ ଲେଖି ଜଣେ ପ୍ରତିଭାସମ୍ପନ୍ନ ସାହିତ୍ୟ ସ୍ରଷ୍ଟା ଭାବେ ନିଜକୁ ପରିଚିତ କରି ପାରିଛନ୍ତି । ଅତି ସରଳ ଅମାୟିକ ପ୍ରକୃତିର । ଶ୍ରୀମାନ୍ ଷଣି କେବଳ ଫୁଲବାଣୀ ଜିଲ୍ଲା କାହିଁକି ଓଡ଼ିଶାର ଅନେକ ସାହିତ୍ୟ ଅନୁଷ୍ଠାନର ସକ୍ରିୟ ସଭ୍ୟ ମଧ୍ୟ ଅଟନ୍ତି । ବିଭିନ୍ନ ନାଟକରେ ଅଭିନୟ କରିବା ଓ ବିଭିନ୍ନ ସାଂସ୍କୃତିକ ଆସରରେ ଯୋଗ ଦେବା ତାଙ୍କର ଅନ୍ୟ ରୁଚି ।



## ଶ୍ରୀ ସହଦେବ କହଁର

ତା ୬।୭।୧୯୪୭ ରେ ଫୁଲବାଣୀ ଜିଲ୍ଲା ମାନେଶ୍ୱର ଗ୍ରାମରେ ଶ୍ରୀ କହଁରଙ୍କ ଜନ୍ମ । ପିତା ଗଇନୁ କହଁର ଓ ମାତା ଧପିଜାସ କହଁରା । ମଧ୍ୟ ଇଂରେଜୀ ପର୍ଯ୍ୟନ୍ତ ପାଠ ପଢି ଶିକ୍ଷକତା କରୁଛନ୍ତି । ୧୯୬୧ ରୁ ଗୀତିନାଟ୍ୟ ଅପେରା, ଦଣ୍ଡ ନାଟ ଓ ସମ୍ବଲପୁରୀ ଭଜନ ରଚନା କରନ୍ତି । ତାଙ୍କର ପ୍ରକାଶିତ ନାଟକ କଂସବଧ, ରଘୁ ଅରକ୍ଷିତ, ଲକ୍ଷ୍ମୀପୁରାଣ, ନାଗର ଚନ୍ଦ୍ରାଳ । ପାଣ୍ଡୁଲିପି ହେଲା ଛତ୍ରପତି ଶିବାଜୀ, ବିନାଶ ମେଳା, କର୍ଣ୍ଣବଧ; ଦାମୋଦର ଚରିତ, ସେ ଏହି ଜିଲ୍ଲାର ସ୍ଥାୟୀ ବାସିନ୍ଦା ।

—o—

## ୰ ସାଧବ ଷେଠ

କେବଳ ମନମୁଣ୍ଡା ଅଞ୍ଚଳ ନୁହେଁ, ସମଗ୍ର ବଉଦ ଉପଖଣ୍ଡରେ ଦଣ୍ଡ-ନାଚ ଗୀତର ଗୁରୁ ଭବେ ପରିଚିତ । ୰ ସାଧବ ଷେଠିଙ୍କ ଜନ୍ମ ଫୁଲବାଣୀ ଜିଲ୍ଲା ମନମୁଣ୍ଡା ଥାନା ବିଳାସପୁର ଗ୍ରାମରେ । ନୂଆ ନୂଆ ଢଗ ଢମାଳି ଚନ୍ଦ୍ରନ୍ ମୌଳିକ କଥା ବସ୍ତୁକୁ ନେଇ ଦଣ୍ଡ ନାଚ ଗୀତ ରଚନା କରିବାରେ ତାଙ୍କର ଶୈଳି ପ୍ରଶଂସନୀୟ । ' ଦଣ୍ଡନାଚ ଗୀତ ' ଶୀର୍ଷକ ପୁସ୍ତକ ତାଙ୍କ ଦ୍ୱାରା ଲିଖିତ ଓ ପ୍ରକାଶିତ ହୋଇଥିଲା ଯାହା ଆଜି ଦୁସ୍ପ୍ରାପ୍ୟ ।

—o—

## ଶ୍ରୀ ସାରଙ୍ଗଧର ମିଶ୍ର

ବଉଦ ଚନ୍ଦ୍ରଚୂଡ଼ ସାହିରେ ସାରଙ୍ଗଧର ମିଶ୍ର ତା ୪-୧୧-୧୯୩୫ ରେ ଜନ୍ମ ଗ୍ରହଣ କରିଥିଲେ । ପିତା ୰ ମାର୍କେଣ୍ଡେୟ ମିଶ୍ର ଓ ମାତା ୰ ରାଣେଶ୍ୱରୀ । ଶ୍ରୀ ମିଶ୍ରଙ୍କର ଶିକ୍ଷାଗତ ଯୋଗ୍ୟତା ହିନ୍ଦି ଭାଷାରେ ଏମ୍: ଏ: [ସମ୍ବଲପୁର ବିଶ୍ୱ ବିଦ୍ୟାଳୟ] । ଉଚ୍ଚ ଇଂରାଜୀ ବିଦ୍ୟାଳୟର ଛାତ୍ର ଥିବା ସମୟରେ ସେ ପ୍ରବନ୍ଧ, ଗଳ୍ପ ଓ କବିତା ରଚନା ଆରମ୍ଭ କରିଥିଲେ । ତାଙ୍କର ଲେଖା ଆସନ୍ତା କାଲି ଉଗର ସହକାର ଓ ବଉଦ ଯୋଗେନ୍ଦ୍ରଦେବ ଉଚ୍ଚ ଇଂରାଜୀ ବିଦ୍ୟାଳୟର ମୁଖପତ୍ର ଭାରତୀରେ ପ୍ରକାଶ ପାଇଛି । ହିନ୍ଦି ଓ ସଂସ୍କୃତ ଭାଷାରେ ମଧ୍ୟ ସେ ଗଳ୍ପ କବିତା, ପ୍ରବନ୍ଧ ଲେଖନ୍ତି । ସେ ବିଭିନ୍ନ ନାଟକରେ ଅଭିନୟ କରିବା ସଙ୍ଗେ ସଙ୍ଗେ ବଂଶୀବାଦନ କରିଥାଆନ୍ତି । ବ୍ୟବସାୟ ଶିକ୍ଷକତା । ବର୍ତ୍ତମାନ ସେ ବଉଦଠାରେ ଅବସ୍ଥାନ କରୁଛନ୍ତି । ସେ ଜଣେ ହସ୍ତରେଖା ବିଶେଷଜ୍ଞ ଭାବେ ମଧ୍ୟ ପରିଚିତ । ତାଙ୍କର କୌଣସି ପୁସ୍ତକାଦି ଏ ପର୍ଯ୍ୟନ୍ତ ପ୍ରକାଶ ହୋଇ ନ ଥିଲେ ମଧ୍ୟ ଗଳ୍ପ; କବିତା ଓ ପ୍ରବନ୍ଧର କେତେକ ପାଣ୍ଡୁଲିପି ରହିଛି ।

· o —

## ଶ୍ରୀ ସୁଧୀର କୁମାର ସିହ୍ନା

ଶ୍ରୀ ସିହ୍ନାଙ୍କ ଜନ୍ମ ସ୍ଥାନ ଫୁଲବାଣୀ ଜିଲ୍ଲା ବଉଦ ସଦରର କୋଣ୍ଡାପଡା ସାହିରେ ତା ୧ । ୪ । ୧୯୪୮ ରେ । ପିତା ୰ ପ୍ରହ୍ଲାଦ ସିହ୍ନା ଓ ମାତା ଅନ୍ନପୂର୍ଣ୍ଣା ସିହ୍ନା । ବି. ଏ. ପାସ୍ କଲାପରେ ସରକାରୀ ଚାକିରୀ କରି ଆସୁଛନ୍ତି ଓ ଛାତ୍ରାବସ୍ଥାରୁ ଲେଖା ଲେଖି ପ୍ରତି ମନ ବଳାଇଛନ୍ତି । ଗଳ୍ପ ଓ ନାଟକ ପ୍ରତି ତାଙ୍କର ବିଶେଷ ଆଗ୍ରହ ରହିଛି । ତାଙ୍କର ଅପ୍ରକାଶିତ ନାଟକ ବର୍ଦ୍ଧି କନ୍ୟା ଓ ଯାଦୁକର ଅଭିନୀତ ଓ ବହୁ ପ୍ରଶଂସିତ । ଲେଖା ଲେଖି ସହ ସେ ନାଟକରେ ଅଭିନୟ କରନ୍ତି ଓ ନିର୍ଦ୍ଦେଶନା ମଧ୍ୟ ଦେଇ ପାରନ୍ତି । ସେ ଫୁଲବାଣୀ ଜିଲ୍ଲାର ସ୍ଥାୟୀ ବାସିନ୍ଦା ଅଟନ୍ତି ।

—o—

## ସୁନନ୍ଦା ପଟ୍ଟନାୟକ

ଫୁଲବାଣୀ ଜିଲ୍ଲା ବଉଦରେ ତା ୨ । ୧ । ୧୯୫୮ ରେ ଜନ୍ମ । ପିତା ଶ୍ରୀଯୁକ୍ତ ଶ୍ୟାମ କୁମାର ପଟ୍ଟନାୟକ ଓ ମାତା ଶ୍ରୀମତୀ ଶକୁନ୍ତଳା ପଟ୍ଟନାୟକ । ଏମ୍. ଏ. ଶିକ୍ଷା ସମାପ୍ତି ପରେ ବଉଦ ପଞ୍ଚାୟତ ମହାବିଦ୍ୟାଳୟରେ ଅଧ୍ୟାପିକା ଭାବେ ନିଯୁକ୍ତ । ୧୯୬୫ ଛାତ୍ରୀ ଅବସ୍ଥାରୁ ଲେଖା ଲେଖି କରୁଛନ୍ତି । ଆଧୁନିକ କବିତା ଓ ପାରମ୍ପରିକ ଛନ୍ଦମୟ କବିତା ସୃଷ୍ଟି କରିବାରେ ସେ ବେଶ୍ ନିପୁଣା । ତାଙ୍କର ବହୁ କବିତା, ଗଳ୍ପ ପ୍ରଜାତନ୍ତ୍ରର ସାହିତ୍ୟ ବିଭାଗ ସମେତ ଅନେକ ଓଡ଼ିଆ ପତ୍ର ପତ୍ରିକାରେ ସାମୟିକ ଭାବେ ପ୍ରକାଶ ପାଇଛି । ସେ ଏହି ଜିଲ୍ଲାର ସ୍ଥାୟୀ ବାସିନ୍ଦା ।

* o *

## ଶ୍ରୀ ସୁନୀଲ କୁମାର ପଣ୍ଡା

ତା ୧୯ । ୭ । ୭୧ ରେ ବଉଦରେ ଶ୍ରୀ ପଣ୍ଡାଙ୍କ ଜନ୍ମ । ପିତା ଦିଗମ୍ବର ପଣ୍ଡା ଓ ମାତା ଶ୍ରୀମତୀ ଗୁପ୍ତାଦେଇ । ମାଟ୍ରିକ୍ୟୁଲେସନ ଶିକ୍ଷା ସମାପ୍ତି ପରେ ଶିକ୍ଷକତା କରନ୍ତି ଓ ୧୯୮୩ ରୁ କବିତା ଲେଖାରେ ମନୋନିବେଶ କରନ୍ତି । ସେ ଏହି ଜିଲ୍ଲାର ସ୍ଥାୟୀ ବାସିନ୍ଦା । ବର୍ତ୍ତମାନ ଠିକଣା ମହାନ୍ତି ସାହି ପୋ: ବଉଦ ଜି: ଫୁଲବାଣୀ ।

—o—

## ଶ୍ରୀ ସୁଶୀଲ କୁମାର କର୍ଣ୍ଣ

ଶ୍ରୀ କର୍ଣ୍ଣଙ୍କ ଜନ୍ମ ବଉଦ ସବ୍‌ଡିଭିଜନ ବାଲିଗୁଡ଼ା ଥାନାସ୍ଥ ବଳକର ଗ୍ରାମରେ ତା ୧୭ । ୧୦ । ୧୯୫୪ ରେ । ପିତା ଦୀନବନ୍ଧୁ କର୍ଣ୍ଣ ଓ ମାତା ଭାନୁମତୀ କର୍ଣ୍ଣ । ଏମ୍. ଏ. ଏଲ୍: ଏଲ୍. ବି: ପରେ ଓକିଲାତି ଜଣିବା ସଙ୍ଗେ ସଙ୍ଗେ କୌଳିକ ବୃତ୍ତି ଗୃହ କାର୍ଯ୍ୟ ତଦାରଖ କରୁଛନ୍ତି । ଛାତ୍ରାବସ୍ଥାରୁ ଗଳ୍ପ, କବିତା ସମୀକ୍ଷା ଆଦି ରଚନା କରୁଛନ୍ତି ଓ ବର୍ତ୍ତମାନ ଲୋକ ସାହିତ୍ୟ ସଂଗ୍ରହରେ ବ୍ୟସ୍ତ ରହିଛନ୍ତି । ଏକାଧାରରେ ଓକିଲାତି, ସାହିତ୍ୟ ଚର୍ଚ୍ଚା ଓ ଜନ ସେବାରେ ମଧ୍ୟ ସେ ଲାଗି ପଡ଼ିଛନ୍ତି । ସଂପ୍ରତି ମୁଣ୍ଡିପଦର ଗ୍ରାମ ପଞ୍ଚାୟତ-ର ସରପଞ୍ଚ ଭାବେ କାର୍ଯ୍ୟ କରି ଚାଲିଛନ୍ତି । ଗଳ୍ପ, କବିତା, ପ୍ରବନ୍ଧ, ସପ୍ତର୍ଷି, ସମାସ, ହୀରଖଣ୍ଡ ଇତ୍ୟାଦିରେ ପ୍ରକାଶିତ ।



## ଶ୍ରୀ ସୌମେନ୍ଦ୍ରୀ କୁମାର ନାୟକ

ଶ୍ରୀ ନାୟକଙ୍କ ଜନ୍ମ ବଜଦର ମହାନ୍ତ ସାହିରେ ତା ୧୬-୬-୧୯୬୨ ରେ । ପିତା କିଶୋର ଚନ୍ଦ୍ର ନାୟକ ଓ ମାତା ଚନ୍ଦ୍ରଲତା ନାୟକ । ଏ. ଏସ୍. ସି. ଶିକ୍ଷା ପ୍ରାପ୍ତି ପରେ ନିଜର କୌଳିକ ବୃତ୍ତି ଗୃଷ କାର୍ଯ୍ୟରେ ମନୋନିବେଶ କରିବା ସଙ୍ଗେ ସଙ୍ଗେ ସମାଜ ସେବାରେ ନିଜକୁ ବ୍ରତୀ କରିଛନ୍ତି । ବର୍ତ୍ତମାନ ସେ ସମାଜରସ୍ଥାନୀୟ ପ୍ରତିନିଧି । ଯୁବାବସ୍ଥାରୁ କବିତା ରଚନାରେ ମନ ବଳାଇଛନ୍ତି ଓ ବିଶେଷ କରି ବହୁ ବୈପ୍ଳବିକ କବିତା ସୃଷ୍ଟି କରି ପାରିଛନ୍ତି । ଭିନ୍ନ ସାହିତ୍ୟ ଆସରରେ ଯୋଗଦାନ ଦେବା ଓ ସଙ୍ଗୀତରେ ଭାଗ ନେବାରେ ତାଙ୍କର ବିଶେଷ ଆଗ୍ରହ । ଶ୍ରୀ ନାୟକ ଫୁଲବାଣୀ ଜିଲ୍ଲାର ସ୍ଥାୟୀ ବାସିନ୍ଦା ।

* * *

## ଶ୍ରୀ ହରିହର ପ୍ରଧାନ

ତା ୨ । ୧ । ୧୯୪୫ ରେ ଫୁଲବାଣୀ ଜିଲ୍ଲା ମନମୁଣ୍ଡା ଥାନା ଯୋଗୀନ୍ଦ୍ରପୁର ନିକଟସ୍ଥ କୁମରକେଳୀ ଗ୍ରାମରେ ଶ୍ରୀ ପ୍ରଧାନଙ୍କ ଜନ୍ମ । ପିତାଙ୍କ ନାମ ୰ ବସନ୍ତ କୁମାର ପ୍ରଧାନ । ବି. ଏ. ପାସ କଲାପରେ କୌଳିକ ବୃତ୍ତି କୃଷ କାର୍ଯ୍ୟରେ ନିୟୋଜିତ । ୧୯୬୦ ରୁ ନାଟକ ଲେଖିବା ଆରମ୍ଭ କରିଛନ୍ତି ଏବଂ ଏପର୍ଯ୍ୟନ୍ତ ୬ ଖଣ୍ଡ ନାଟକ ପାଣ୍ଡୁଲିପି ପ୍ରସ୍ତୁତ କରି ସାରିଛନ୍ତି । ଏଥି ମଧ୍ୟରୁ ନାଟକ ଜଗଦେବ କାର୍ତ୍ତିକ ମଞ୍ଚସ୍ଥ ହୋଇ ଉଚ୍ଚ ପ୍ରଂଶାସିତ । ଅପ୍ରକାଶିତ ପାଣ୍ଡୁଲିପି - ୧ - ଅଦୃଶ୍ୟ ଇଙ୍ଗିତ ୨- ପ୍ରବଞ୍ଚକ ( ସ୍ୱେଚ୍ଛା ଧର୍ମୀ ) ୩- ଶେଷଦୃଶ୍ୟ ( ବେତାର ଉପଯୋଗୀ ) ୩- ବଦନ୍ତ ଓ ଗୋଟିଏ ଜୀର୍ଣ୍ଣତରୁ (ବେତାର) ୫- ମନ୍ଦାର । ଶ୍ରୀ ପ୍ରଧାନ ଫୁଲବାଣୀ ଜିଲ୍ଲାରସ୍ଥାୟୀ ବାସିନ୍ଦା ଅଟନ୍ତି ।



## ଶ୍ରୀ ଦାମୋଦର ମେହେର

ଶ୍ରୀ ଦାମୋଦର ମେହେର ଙ୍କ ଜନ୍ମ ଫୁଲବାଣୀ ଜିଲ୍ଲା ମନମୁଣ୍ଡା ଥାନା ମନମୁଣ୍ଡା ଗ୍ରାମରେ ତାଙ୍କର ଅକ୍ରୁରର ମୃତ୍ୟୁ (୧୯୫୭) ରେ ଶିବଭକ୍ତି, ଜଗନ୍ନାଥ ଜଣାଣ ପ୍ରଭୃତି ଗୀତ ପୁସ୍ତିକା ପ୍ରକାଶିତ ହୋଇ ଜନ ସାଧାରଣ ଙ୍କ ମଧ୍ୟରେ ବିଶେଷ ଆଦର ଲାଭ କରିଛି । ବିଭିନ୍ନ ଗୀତ ଗଡିକୀରେ ଏହି ପୁସ୍ତିକା ଲେଖା ଯାଇଥିବା ରୁ ନକଲ ଶୁଣିତ ମଧ୍ୟ । ତାଙ୍କର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନଥିଲେ ମଧ୍ୟ ବହୁ କଷ୍ଟ ଲବ୍ଧ ଅର୍ଥବ୍ୟୟ କରି ଏହି ପୁସ୍ତିକା ମୁଦ୍ରିତ କରେ ପ୍ରକାଶ କରି ବିଭିନ୍ନ ଯାତ୍ରା ପର୍ବରେ ବିକ୍ରୟ କରୁଥିବା ଲକ୍ଷ୍ୟ କରାଯାଏ । ବର୍ତ୍ତମାନ ବୃଦ୍ଧ ଅବସ୍ଥାରେ ଶ୍ରବଣ ଶକ୍ତି ହରାଇ ବସିଛନ୍ତି ।





## ଶ୍ରୀ ଅନନ୍ତ ଚରଣ ମିଶ୍ର

ପୁରୀ ଜିଲ୍ଲା ଟାଙ୍ଗିସାହି ନିକଟ ବିଦ୍ୟାସିଂହପୁର ଶାସନରେ ତା ୨୮ । ୧୧ । ୧୯୩୬ ଖ୍ରୀଷ୍ଟାବ୍ଦରେ ମିଶ୍ରଙ୍କ ଜନ୍ମ । ପିତା ଶ୍ରୀ ବଳୁଆକ୍ଷ ମିଶ୍ର ଓ ମାତା ଶ୍ରୀମତୀ ରୁକ୍ମଣୀ ଦେବୀ । ଶିକ୍ଷାଗତ ଯୋଗ୍ୟତା ଏମ୍ ଏ (ଉତ୍କଳ) ଡି. ଏଚ୍. ଇ. (ଦିଲ୍ଲୀ ବିଶ୍ୱ ବିଦ୍ୟାଳୟ) । ଓଡ଼ିଶା ସ୍ୱାସ୍ଥ୍ୟ ବିଭାଗ ଅଧୀନରେ ଜିଲ୍ଲା ପରିବାର କଲ୍ୟାଣ ସଂସ୍ଥା ଫୁଲବାଣୀରେ ଜିଲ୍ଲା ଗଣଶିକ୍ଷା ଓ ସୂଚନା ଅଧିକାରୀ ଭାବେ ଫୁଲବାଣୀରେ ବିଗତ ଅଠର ବର୍ଷ ହେବ ରହି ଆସୁଛନ୍ତି । ୧୯୫୦ ରୁ ଲେଖା ଲେଖି କରୁଛନ୍ତି । ଇଂରାଜୀ, ଓଡ଼ିଆ ଓ ହିନ୍ଦୀ ଭାଷାରେ କବିତା; ଗଳ୍ପ, ନାଟକ କାବ୍ୟ; ସମାଲୋଚନା ଲେଖି ପାରନ୍ତି । ବିଭିନ୍ନ ପତ୍ର ପତ୍ରିକାରେ ଅନେକ କବିତା ପ୍ରକାଶ ପାଇଛି । ତାଙ୍କର କାବ୍ୟ, ବିଳ୍ୱମଙ୍ଗଳ; ଜୀମୂତ ବାହନ, କୀଚକ ବଧ ପ୍ରକାଶ ଅପେକ୍ଷାରେ ।

—o—

## ଶ୍ରୀ ଅରୂପ କୁମାର ଜେନା

ଶ୍ରୀ ଅରୂପ କୁମାର ଜେନାଙ୍କର ଜନ୍ମ ତା ୧୫ । ୩ । ୧୯୪୭ ରେ ଫୁଲବାଣୀର ପିଅନ ଛକାରେ । ପିତା ୮ ଭୁବନ କୁମାର ଜେନା ଓ ମାତା ଶ୍ରୀମତୀ ଅରୁଣା ଜେନା । ଶ୍ରୀ ଜେନାଙ୍କର ଶିକ୍ଷାଗତ ଯୋଗ୍ୟତା ବି. ଏ. । ସ୍ୱତନ୍ତ୍ର ସେ ସାମ୍ବାଦିକତାକୁ ନିଜର ବୃତ୍ତି ରୂପେ ବାଛି ନେଇଛନ୍ତି । ୧୯୭୨ ରୁ ଲେଖିବା ଦ୍ୱାରା ମନ ବଳାଇ କବିତା, ରମ୍ୟ ରଚନା ଓ ସମ୍ବାଦ ସାହିତ୍ୟ ସୃଷ୍ଟି କରିବା କାର୍ଯ୍ୟ ଅବ୍ୟାହତ ରଖିଛନ୍ତି । ତାଙ୍କର 'ପାଷାଣୁ ଲୁହ ଝରେ' ନାମକ ନାଟକ ଅପେକ୍ଷାରେ । ଫୁଲବାଣୀର ବନାମ କଳା ସଂଗମ ସାହିତ୍ୟ ବିଭାଗରେ ସେ ସଂପାଦକ ଅଛନ୍ତି । ଏତଦ୍ ବ୍ୟତୀତ ଶ୍ରୀ ଜେନା ହରଙ୍ଗପୁ

ଦେବୋଦାର ସାମ୍ବାଦିକ ମହାସଂଘରେ ଜାତୀୟ ପରିଷଦ ସଦସ୍ୟ ଜିଲ୍ଲା ସାମ୍ବାଦିକ ସଂଘର ସାଧାରଣ ସମ୍ପାଦକ, ଜିଲ୍ଲା କ୍ରୀଡ଼ା ସଂଘର ଉପସଭାପତି, ଜିଲ୍ଲା ପ୍ରତିନିଧି ପି. ଟି. ଆଇ. ସମ୍ବାଦ ଯୋଗାଣ ସଂସ୍ଥା, ମାତୃଭୂମିର ଜିଲ୍ଲା ପ୍ରତିନିଧି ଓ ଆକାଶବାଣୀର ଜିଲ୍ଲା ପ୍ରତିନିଧି ମଧ୍ୟ ରହିଛନ୍ତି।

—୦—

## ଅଲକା ଦାସ

ତା. ୧ । ୫ । ୪୭ ରେ ବଲାଙ୍ଗୀର ଜିଲ୍ଲା ରମାଇ ଗଡାରେ ଜନ୍ମ । ପିତା ଶ୍ରୀ ସତ୍ୟବାଦୀ ବେହେରା ଓ ମାତା ଶ୍ରୀମତୀ ସୁରେଖା ବେହେରା । ଶିକ୍ଷାଗତ ଯୋଗ୍ୟତା ବି. ଏ. ଏଲ୍. ଏଲ୍. ବି. । ପେଶା ଓକିଲାତି । ୧୯୮୨ ମସିହାରୁ ଗଳ୍ପ, କବିତା ଲେଖୁଛନ୍ତି । ବିଭିନ୍ନ ସାହିତ୍ୟ ଆସରରେ ଅଂଶ ଗ୍ରହଣ କରିବା ଓ ସାଂସ୍କୃତିକ କାର୍ଯ୍ୟକ୍ରମରେ ଅଂଶ ଗ୍ରହଣ କରିବାକୁ ବିଶେଷ ଆଗ୍ରହୀ । ଜିଲ୍ଲା ମହିଳା କଂଗ୍ରେସ ( ଆଇ ) ର ସେ ସଭାନେତ୍ରୀ ଅଛନ୍ତି ଓ ୧୯୭୧ ମସିହାରୁ ଫୁଲବାଣୀ ଜିଲ୍ଲାର ଫୁଲବାଣୀ ସହରରେ ଅବସ୍ଥାନ କରୁଛନ୍ତି । ଶ୍ରୀମତୀ ଦାସଙ୍କ ବର୍ତ୍ତମାନ ଠିକଣା- ମାର୍ଫତ ଜଗନ୍ନାଥ ଦାସ, ଆଡ୍‌ଭୋକେଟ୍, ଫୁଲବାଣୀ ।

✽ ✽ ✽

## ଶ୍ରୀ ଉଦ୍ଧବ ସେଠ ମହାନନ୍ଦ

ଶ୍ରୀ· ମହାନନ୍ଦଙ୍କ ଜନ୍ମ ୧୯୩୦ ସାଲରେ ଫୁଲବାଣୀ ଜିଲ୍ଲା ଟିକାବାଲି ବ୍ଲକ ସିରିଙ୍ଗ ଗ୍ରାମରେ । ପିତା ଗଙ୍ଗାଧର ମହାନନ୍ଦ । ଶିକ୍ଷାଗତ ଯୋଗ୍ୟତା ୭ମ ଶ୍ରେଣୀ । ବ୍ୟବସାୟ କୃଷି । ୧୯୪୮-୪୯ ରୁ ଲେଖା ଆରମ୍ଭ । ଭଜନ, ଚଉତିଶା ଏବଂ କାବ୍ୟ ରଚନା କରୁଛନ୍ତି । ତାଙ୍କର ଅନ୍ନପୂର୍ଣ୍ଣା ୧୯୫୩ ରେ ପ୍ରକାଶିତ । ସେ ଫୁଲବାଣୀ ଜିଲ୍ଲା ହରିଜନ କଲ୍ୟାଣ କମିଟିର କାର୍ଯ୍ୟକାରୀ ସଭାପତି ଅଛନ୍ତି ।

—୦—

## ୰ ଉଷତ ସାହୁ

୰ ଉଷତ ସାହୁଙ୍କ ବିଷୟରେ ବିଶେଷ ଯତ୍ନବାନ ହୋଇ ମଧ୍ଯ ସବିଶେଷ ତଥ୍ୟାବଳୀ ସଂଗ୍ରହ କରିବାରେ ଆମେ ସଫଳ ହୋଇ ପାରି ନ ଥିଲେ ମଧ୍ଯ ଶ୍ରୀ ସାହୁଙ୍କ ଜନ୍ମ ସ୍ଥାନ ଯେ, ଫୁଲବାଣୀ ଜିଲ୍ଲା ବଲସକୁମ୍ପା ଗ୍ରାମରେ ଆମେ ଏଥିରେ ନିଃସନ୍ଦେହ । ତାଙ୍କ ପିତା ଶ୍ୟାମ ସାହୁ । ୰ ସାହୁ ଶିକ୍ଷକତା କରୁଥିଲେ ଦଣ୍ଡ ନାଚ ଗୀତ ରଚନା କରି ସେ ଫୁଲବାଣୀ ସବ୍‌ଡିଭିଜନରେ ବିଶେଷ ଲୋକପ୍ରିୟ ହୋଇ ପାରିଥିଲେ ।

—o—

## କୁମାରୀ ନୀହାରନଳିନୀ ଷଡଙ୍ଗୀ ( ଚିତ୍ର )

୧୯୬୪ ମସିହା ଅଗଷ୍ଟ ମାସ ବାଇଶ ତାରିଖରେ ପୁରୀ ଜିଲ୍ଲା ଜଟଣୀର ହାଟ ବଜାରରେ କୁମାରୀ ଷଡ଼ଙ୍ଗୀଙ୍କ ଜନ୍ମ । ପିତା ଅଧ୍ଯାପକ ଦେବେନ୍ଦ୍ର ଷଡ଼ଙ୍ଗୀ ଓ ମାତା ଶ୍ରୀମତୀ ଅନୁପମା ଷଡଙ୍ଗୀ । ଇଂରାଜୀ ଭାଷା ଓ ସାହିତ୍ୟରେ ଏମ୍. ଏ. ଶିକ୍ଷାଲାଭ କରିବାପରେ ଅଧ୍ଯାପନା କରୁଛନ୍ତି ଓ ସଂପ୍ରତି ବଉଦ ପଞ୍ଚାୟତ ମହା ବିଦ୍ୟାଳୟରେ ଇଂରାଜୀ ଅଧ୍ଯାପିକା ଭାବେ କାର୍ଯ୍ୟ ସମ୍ପନ୍ନ କରୁଛନ୍ତି । ୧୯୭୫ ମସିହାରୁ ସେ ଆଧୁନିକ ଓଡ଼ିଆ କବିତା ଓ କ୍ଷୁଦ୍ର ଗଳ୍ପ ରଚନା କରୁ-ଛନ୍ତି । ସାମୟିକ ଭାବେ ତାଙ୍କର ଲେଖା ନଗୋକର୍ଣ୍ଣିକା, ପ୍ରଜାତନ୍ତ୍ର ସାପ୍ତାହିକୀ; ବନମାଳା ଇତ୍ୟାଦି ବହୁ ପତ୍ର ପତ୍ରିକାରେ ବହୁବାର ପ୍ରକାଶିତ ଓ ପାଠକ ପାଠିକାଙ୍କ ଦ୍ଵାରା ଉଚ୍ଚ ପ୍ରଶଂସିତ । ତାଙ୍କର ' କାହ୍ନୁକୁ ଚିଠାଉ ' ଶୀର୍ଷକ ଏକ କବିତା ସଂକଳନ ପ୍ରକାଶ ଅପେକ୍ଷାରେ ।



## ଶ୍ରୀ କୁମୁଦ ଚନ୍ଦ୍ର ମଲ୍ଲିକ

ଶ୍ରୀ ମଲ୍ଲିକଙ୍କ ଜନ୍ମ ତା ୧୮ । ୯ । ୧୯୩୮ ରେ ଫୁଲବାଣୀ ସଦର ମାଷ୍ଟର ପଡ଼ାରେ । ପିତା ୮ ସୋମନାଥ ମଲ୍ଲିକ ଓ ମାତା ଶ୍ରୀମତୀ କପିଳାସ ମଲ୍ଲିକ । ଶିକ୍ଷାଗତ ଯୋଗ୍ୟତା ବି. ଏ. । ସରକାରୀ ଚାକିରୀରୁ ସ୍ୱେଚ୍ଛାକୃତ ଇସ୍ତଫା ପ୍ରଦାନ କରି ସେ ନିଜର କୌଳିକ ବୃତ୍ତି ବ୍ୟବସାୟରେ ମନ ନିବେଶ କରନ୍ତି ଓ ୧୯୫୭ ରୁ କବିତା, ଗଳ୍ପ, ପ୍ରବନ୍ଧ ସୃଷ୍ଟି କରନ୍ତି । ସେ ଜଣେ ଦକ୍ଷ ଇଂରାଜୀ ଓ ହିନ୍ଦି ଭାଷାର ଅନୁବାଦକ । ସମାଜ ସେବାରେ ବହୁ ସମୟ ବିନିଯୋଗ କରୁଥିବା ଜଣେ ଯୋଧ । ଫୁଲବାଣୀସ୍ଥ ମୋହନଦାସ କରମଚାନ୍ଦ ସାଂସ୍କୃତିକ ପରି-ଷଦର ସେ ସଭାପତି ଓ ସାହିତ୍ୟ ପତ୍ରିକା ବନମାଳାର ସେ ମୁଖ୍ୟ ସଂପାଦକ । ସଂପ୍ରତି ଶ୍ରୀ ମଲ୍ଲିକ ଓଡ଼ିଶା ସାହିତ୍ୟ ଏକାଡେମୀର ଜିଲ୍ଲା ପ୍ରତିନିଧି ଅଛନ୍ତି । ସେ ଏହି ଜିଲ୍ଲାର ସ୍ଥାୟୀ ବାସିନ୍ଦା ।



## ଶ୍ରୀ ଗୁପ୍ତେଶ୍ୱର ମଲିକ

ଶ୍ରୀ ମଲିକଙ୍କ ଜନ୍ମ ତା ୧୦ । ୬ । ୧୯୩୬ ରେ ଫୁଲବାଣୀ ଜିଲ୍ଲା ଉଦୟଗିରି ନିକଟସ୍ଥ କାମଟଦର ଗ୍ରାମରେ । ପିତା ୮ ସାଳଗା ମଲିକ ଓ ମାତା ୮ ଜମୁନା ଦେଈ । ଶିକ୍ଷାଗତ ଯୋଗ୍ୟତା ମାଟ୍ରିକୁ୍ୟଲେସନ ଓ ହିନ୍ଦିରେ ସାହିତ୍ୟ ରତ୍ନ । ୧୯୬୧-୬୨ ରୁ ସେ ଆଧୁନିକ କବିତା, ଶିଶୁ କବିତା ଓ କୁଇ ଗୀତ ଲେଖୁ ରଚନା କରି ଆସୁଛନ୍ତି । ତାଙ୍କର କେତେକ ଲେଖା ମୀନାବଜାର ପତ୍ରିକାରେ ପ୍ରକାଶିତ ହୋଇଅଛି । ଶ୍ରୀରାମ ବନବାସ ( ନାଟକ ) ଓ ବୃହତ କୁଇ ଶିକ୍ଷା ନାମକ ଦୁଇଟି ପାଣ୍ଡୁଲିପି ମଧ୍ୟ ଅଛି । ଶିକ୍ଷକତା କରନ୍ତି ଓ ବହୁନ୍ତ ସୌଖୀନ ନାଟ୍ୟ ସଂସ୍ଥାରେ ନାଟ୍ୟ ନିର୍ଦ୍ଦେଶନା ଦେବା ସଙ୍ଗେ ସଙ୍ଗେ

ବାଦ୍ୟ ମନ୍ତ୍ର ପରିଚାଳନା ମଧ୍ୟ କରିଥାନ୍ତି । ବର୍ତ୍ତମାନ ଫିରିଙ୍ଗିଆର ସରକାରୀ ଉଚ୍ଚ ବିଦ୍ୟାଳୟରେ ଅବସ୍ଥାପିତ । ଶ୍ରୀ ମଲିକ ଫୁଲବାଣୀ ଜିଲ୍ଲାର ସ୍ଥାୟୀ ବାସିନ୍ଦା ।

—o—

## ଶ୍ରୀ ଗୋପିନାଥ ପ୍ରଧାନ

୧୯୪୦ ମସିହା କାର୍ତ୍ତିକ ମାସରେ ଫୁଲବାଣୀ ଜିଲ୍ଲା ବଲସକୁମ୍ପା ଗ୍ରାମରେ ଜନ୍ମ । ପିତା ଭାଗବତ ପ୍ରଧାନ ଓ ମାତା ୪ ଭୁଜା ଦେବୀ । ଶିକ୍ଷାଗତ ଯୋଗ୍ୟତା ୩ୟ ଶ୍ରେଣୀ । ବ୍ୟବସାୟ କୃଷି, ଦଣ୍ଡନାଚ ଗୀତ ରଚନା କରନ୍ତି । ଅପ୍ରକାଶିତ ଲେଖା ଗୁଡିକ ହେଲା ୧- ଦଣ୍ଡନାଚ [ ଶିବପୁରାଣ ] ୨- ବଗଳା-ଦେବୀ ବନ୍ଦନା ୩ - ଦୁର୍ଗାବନ୍ଦନା ଇତ୍ୟାଦି । ଶ୍ରୀ ପ୍ରଧାନ ଏହି ଜିଲ୍ଲାର ସ୍ଥାୟୀ ବାସିନ୍ଦା ।

— o —

## ଶ୍ରୀ ଚନ୍ଦ୍ରଶେଖର ମିଶ୍ର

ଶ୍ରୀ ଚନ୍ଦ୍ରଶେଖର ମିଶ୍ର ତା ୧୫ । ୫ । ୧୯୫୩ ରେ ପୁରୀ ଜିଲ୍ଲା ପାଟଦୋଣା ଗ୍ରାମରେ ଜନ୍ମ ଗ୍ରହଣ କରିଛନ୍ତି । ତାଙ୍କ ପିତା ଶ୍ରୀ ନିଲୋଚନ ମିଶ୍ର ଓ ମାତା ଚନ୍ଦ୍ରମଣି ମିଶ୍ର । ଏମ୍. ଏ. ବି. ଇଡ. ଏଲ୍. ଏଲ୍. ବି. ପାସ୍ କଲାପରେ ଗତ ୭ ବର୍ଷ ହେବ ଫୁଲବାଣୀରେ ଓକିଲାତି ବ୍ୟବସାୟ ଆରମ୍ଭ କରିଛନ୍ତି । ୧୯୭୦ ରୁ ଗୀତ, କବିତା ସୃଷ୍ଟି ଉଦ୍ୟମ ଅବ୍ୟାହତ ରଖିଛନ୍ତି ଓ ବିଭିନ୍ନ ସାଂସ୍କୃତିକ କାର୍ଯ୍ୟକ୍ରମରେ ଭାଗ ନେଇ ଆସୁଛନ୍ତି ।

—o—

## ଶ୍ରୀ ଜଗଦୀଶ ଚନ୍ଦ୍ର ଦାସ

ଗଞ୍ଜାମ ଜିଲ୍ଲା ଭଞ୍ଜନଗରରେ ତା ୧୦ । ୯ । ୧୯୪୪ ରେ ଶ୍ରୀ ଦାସଙ୍କ ଜନ୍ମ । ପିତା ଶ୍ୟାମସୁନ୍ଦର ତରିପିଆ ଓ ମାତା ସକୁନ୍ତଳା ଦେବୀ । ବି. ଏ. ଏଲ୍. ଏଲ୍. ବି. ପରେ ଓକିଲାତି ବ୍ୟବସାୟ କରୁଛନ୍ତି ଓ ବର୍ତ୍ତମାନ ଫୁଲବାଣୀରେ ସ୍ଥାୟୀ ଭାବେ ବସବାସ କରୁଛନ୍ତି । ୧୯୬୩ ମସିହାରୁ ଗଳ୍ପ, କବିତା ଓ ପ୍ରବନ୍ଧ ରଚନା କରୁଛନ୍ତି । ଶ୍ରୀ ଦାସ ଜଣେ ମଞ୍ଚ ଅଭିନେତା ଓ ଟେବକର ମଧ୍ୟ । ଫୁଲବାଣୀର ବନାନୀ କଳା ପରିଷଦର ସେ ସମ୍ପାଦକ ଅଛନ୍ତି ।

—o—

## ଶ୍ରୀ ନିତ୍ୟାନନ୍ଦ ସାମଲ

ଫୁଲବାଣୀ ସହରର ଅମଲା ପଡାରେ ନିତ୍ୟାନନ୍ଦ ସାମଲଙ୍କ ଜନ୍ମ । ତାଙ୍କ ପିତା ବାବାଜି ସାମଲ । ବର୍ତ୍ତମାନ ସରକାରୀ ଚାକିରୀ କରୁଛନ୍ତି । ୧୯୭୦ରୁ ସାହିତ୍ୟ ସୃଷ୍ଟି ପାଇଁ ମନ ବଳାଇଛନ୍ତି । କେବଳ କବିତା ଲେଖିବା ଓ ବିଭିନ୍ନ କବିତା ପାଠୋତ୍ସବରେ ଯୋଗଦେବା ବ୍ୟତୀତ ସେ ମଞ୍ଚରେ ଅଭିନୟ ମଧ୍ୟ କରି ଥାଆନ୍ତି । ଶ୍ରୀ ସାମଲ ଜଣେ ଖେଳୁଆଡ ଭାବେ ମଧ୍ୟ ପରିଚିତ ।

—※—

## ଶ୍ରୀ ନିର୍ମଳ ଚନ୍ଦ୍ର ମିଶ୍ର

ଶ୍ରୀ ନିର୍ମଳ ଚନ୍ଦ୍ର ମିଶ୍ର ପି: ଶ୍ରୀ ଧବଳେଶ୍ୱର ନାୟକ ଓ ମାତା ଶ୍ରୀମତୀ ବୃନ୍ଦାବତୀ ଦେବୀ । ପୁରୀ ଜିଲ୍ଲା ବନମାଳୀପୁର ନିକଟସ୍ଥ ନୂଆସାହି ଗ୍ରାମରେ ତା ୧୮ । ୫ । ୧୯୫୪ ରେ ଜନ୍ମ । ଶିକ୍ଷାଗତ ଯୋଗ୍ୟତା ଏମ୍. ଏ. ବି. ଇଡ୍. ।

ବର୍ତ୍ତମାନ ଲଇଦେଓ। ନିକଟସ୍ଥ ଝଟୱୋପଟା ଗ୍ରାମରେ ଶିକ୍ଷକତା କରୁଛନ୍ତି । ୧୯୬୨ ରୁ କବିତା ଗଳ୍ପ; ଉପନ୍ୟାସ ଓ ନାଟକ ଆଦି ରଚନା କରି ଆସୁଛନ୍ତି । ଲୁହର ଶ୍ରାବଣୀ ନାମକ ଉପନ୍ୟାସର ଛପା କାମ ଏବେ ଆଗେଇ ଚୂଲିଛି । ଲେଖକଙ୍କ ନିକଟରେ ଥିବା ପାଣ୍ଡୁଲିପି ସମୂହ ହେଲା, ୧- ସ୍ୱପ୍ନର ପରିଧି [ କବିତା ] ୨- ବିବର୍ଣ୍ଣ ଆକାଶ [ ଗଳ୍ପ ] ୩- ସମ୍ରାଟ ଚନ୍ଦ୍ରଗୁପ୍ତ (ନାଟକ) ୪- ଚନ୍ଦ୍ର ଦେବଙ୍କର ଶେଷ ବଳୀ ୫- ରକ୍ତ ତର୍ପଣ ୬- ଦିଗ୍‌ବିଜୟୀ ୭- ଭାଗ୍ୟ ଚକ୍ର ୮- ଶତା ଭସ୍ମ ୯- ସପ୍ତ ସିନ୍ଧୁ ୧୦- ଭକ୍ତି ଅର୍ଘ୍ୟ । ବନମାଳା, ଫଲଗୁ ଓ ଅନ୍ୟାନ୍ୟ କେତେକ ପତ୍ରିକାରେ ଗଳ୍ପ କବିତା ପ୍ରକାଶିତ । ଏହି ଜିଲ୍ଲାରେ ୮ ବର୍ଷ ହେବ ରହି ଆସୁଛନ୍ତି ।

—o—

## ଶ୍ରୀ ପଞ୍ଚାନନ ଅଗ୍ରୱାଲ୍

ଫୁଲବାଣୀ ଜିଲ୍ଲା ବଉଦ ସହରରେ ତା ୫ । ୨ । ୧୯୫୮ ରେ ଜନ୍ମ । ପିତା ଶିବ ପ୍ରସାଦ ଅଗ୍ରୱାଲ ଓ ମାତା ସାବିତ୍ରୀ ଅଗ୍ରୱାଲ । ଶିକ୍ଷାଗତ ଯୋଗ୍ୟତା ଆଇ. ଏ. । ଫୁଲବାଣୀରେ ରହି ସାମ୍ବାଦିକତା ଓ ବ୍ୟବସାୟ କରନ୍ତି । ୧୯୭୦ ରୁ ଲେଖା ଆରମ୍ଭ । ତାଙ୍କର ବହୁତ ସ୍ୱାଦର ଗଳ୍ପ, କବିତା, ଫିଚର, ପ୍ରବନ୍ଧ ଇତ୍ୟାଦି ବିଭିନ୍ନ ସମୟରେ ଆନ୍ଦୋଳନ, ସପ୍ତର୍ଷି, ମୀନା ବଜାର, ଧରିତ୍ରୀ; ପ୍ରଜାତନ୍ତ୍ର, କୃଷ୍ଣ ଧାପ ଓ ବଉଦ ଇତ୍ୟାଦିରେ ପ୍ରକାଶିତ । ସବିତା ସାହିତ୍ୟ ସଂସଦର ସଂପାଦକ ଭାବେ କାର୍ଯ୍ୟ ତୁଲାଉଛନ୍ତି । ସେ ଏ ଜିଲ୍ଲାର ସ୍ଥାୟୀ ବାସିନ୍ଦା ।



## ଶ୍ରୀ ପୂର୍ଣ୍ଣେନ୍ଦୁ ତ୍ରିପାଠୀ

୧୯୬୨ ମସିହା ଜୁନ୍ ମାସ ୨୦ ତାରିଖରେ ଗଞ୍ଜାମ ଜିଲ୍ଲା ଭଞ୍ଜନଗର ଥାନା ବଲଡ଼ି ଗ୍ରାମରେ ଜନ୍ମ । ଓଡ଼ିଆ ଭାଷା ସାହିତ୍ୟରେ ଏମ୍. ଏ. ଶିକ୍ଷା

ସମାପ୍ତି କରି ଫୁଲବାଣୀରେ ଅବସ୍ଥାନ କରୁଛନ୍ତି । ୧୯୭୮ ରୁ କ୍ଷୁଦ୍ର ଗଳ୍ପ, ଏକାଙ୍କିକା ଓ କବିତା ରଚନା କରୁଛନ୍ତି । ତାଙ୍କର ଗଳ୍ପ ସମାବେଶ ନାମକ ଗଳ୍ପ ସଂକଳନ ପ୍ରକାଶ ଅପେକ୍ଷାରେ । ଫୁଲବାଣୀର ମୋହନ ଦାସ କରମ ଗୃହ ସାଂସ୍କୃତିକ ପରିଷଦର ଜଣେ ସକ୍ରିୟ ସଭ୍ୟ ଓ ବହୁ ସାଂସ୍କୃତିକ ଅନୁଷ୍ଠାନ ସହ ସେ ସଂପୃକ୍ତ । ୧୯୬୮ ଠାରୁ ସେ ଫୁଲବାଣୀ ଜିଲ୍ଲାରେ ରହୁଛନ୍ତି ।



## ଶ୍ରୀ ପ୍ରଫୁଲ୍ଲ କୁମାର ଧଳ

ତା ୮ । ୯ । ୧୯୬୦ ରେ ବାଲେଶ୍ୱର ଜିଲ୍ଲା ଆଖୁଆପଦା ଥାନା ମଞ୍ଜୁରି ଗ୍ରାମରେ ଧଳଙ୍କର ଜନ୍ମ । ପିତା ରମେଶ ଚନ୍ଦ୍ର ଧଳ ଓ ମାତା ୰ଶାନ୍ତିଲତା ଧଳ । ଶିକ୍ଷାଗତ ଯୋଗ୍ୟତା ରାଜନୀତି ବିଜ୍ଞାନରେ ଏମ୍. ଏ. । ସମାଜ ସେବାରେ ନିଜକୁ ବ୍ୟସ୍ତ କରିଛନ୍ତି ଓ ବର୍ତ୍ତମାନ ବାଲିଗୁଡ଼ା ନିକଟସ୍ଥ ରୁଦୁଙ୍ଗିଆରେ ଅବସ୍ଥାନ କରୁଛନ୍ତି । କବିତା, ଗଳ୍ପ ଲେଖିବା ୧୯୭୫ ରୁ ଆରମ୍ଭ କରିଛନ୍ତି । ଅପ୍ରକାଶିତ କବିତା ସଂକଳନ, ମଣିଷ ଓ ଅନ୍ୟ ଏକ ପୃଥିବୀ । ୧୯୮୩ ରୁ ସେ ଫୁଲବାଣୀ ଜିଲ୍ଲାରେ ବସବାସ କରୁଛନ୍ତି ।



## ଶ୍ରୀମତୀ ପ୍ରଶାନ୍ତନଳିନୀ ସାମଲ

ତା ୨୭ । ୬ । ୧୯୫୯ ରିଖରେ ପୁରୀ ଜିଲ୍ଲା ଜଟଣୀର ହାଟବଜାରରେ ଜନ୍ମ । ପିତା ଅଧ୍ୟାପକ ଦେବେନ୍ଦ୍ର ନାଥ ଷଡ଼ଙ୍ଗୀ ଓ ମାତା ଶ୍ରୀମତୀ ଅନୁପମା ଷଡ଼ଙ୍ଗୀ । ଶିକ୍ଷାଗତ ଯୋଗ୍ୟତା ଆଇ. ଏ. । ୧୯୭୪ ରୁ ଆଧୁନିକ କବିତା

ସୃଷ୍ଟିରେ ମନୋନିବେଶ କରି ଅଧିକ କବିତା ସୃଷ୍ଟି କରି ପାରନ୍ତି । ବହୁ ଓଡ଼ିଆ ପତ୍ର ପତ୍ରିକାରେ ତାଙ୍କର ଲେଖା ସାମୟିକ ଭାବେ ପ୍ରକାଶ ପାଉଛି । ବିଭିନ୍ନ ସାଂସ୍କୃତିକ କାର୍ଯ୍ୟକ୍ରମରେ ସେ ଅଂଶ ଗ୍ରହଣ କରନ୍ତି । ୧୯୭୮ ରୁ ଫୁଲବାଣୀରେ ଅବସ୍ଥାନ କରୁଛନ୍ତି । ଶ୍ରୀମତୀ ଷଡଙ୍ଗୀଙ୍କ ବର୍ତ୍ତମାନ ଠିକଣା— ମାର୍ଫତ ଶ୍ରୀ ନିତ୍ୟାନନ୍ଦ ସାମଲ, ପ୍ରଭାତ ଷ୍ଟୋର, ଫୁଲବାଣୀ ।

—୦—

## ଶ୍ରୀ ବସନ୍ତ କୁମାର ସାହୁ

ଢେଙ୍କାନାଳ ଜିଲ୍ଲା କଅଁରପାଳ ନିକଟସ୍ଥ ବଳାଭଦ୍ରପୁର ଗ୍ରାମରେ ତା ୫ । ୪ । ୧୯୫୭ ରେ ଜନ୍ମ । ପିତା ଶ୍ରୀ ରତ୍ନାକର ସାହୁ ଓ ମାତା ଶ୍ରୀମତୀ ଅନ୍ନପୂର୍ଣ୍ଣା ସାହୁ । ଶିକ୍ଷାଗତ ଯୋଗ୍ୟତା ବିଶ୍ଳେଷଣାତ୍ମକ ଓ ପ୍ରୟୋଗାତ୍ମକ ଅର୍ଥନୀତିରେ ଏମ୍. ଏ. । ୧୯୭୦ ରୁ ଲେଖା ଆରମ୍ଭ । ମୌଳିକ ଗଳ୍ପ, ଅନୁବାଦ ଗଳ୍ପ, ଉପନ୍ୟାସିକା ଓ କଲେଜ ପାଠ୍ୟ ପୁସ୍ତକ ରଚନା କରନ୍ତି । ପ୍ରକାଶିତ ପୁସ୍ତକ ରୁରାଲ ବ୍ୟାଙ୍କିଂ ଆଣ୍ଡ କୋଅପରେଟିଭ୍ ମ୍ୟାନେଜମେଣ୍ଟ । ୧୯୮୭ରେ ଏହା ବ୍ରହ୍ମପୁରସ୍ଥ ଶଙ୍ଖଲେଖା ପ୍ରକାଶନ ସଂସ୍ଥା ଦ୍ୱାରା ପ୍ରକାଶିତ । ଅପ୍ରକାଶିତ ଲେଖା ମନ ଗହ୍ୱରର ଝଡ଼, [ ଅନୁବାଦ ଉପନ୍ୟାସ ] । ୧୯୭୫ ରେ ଜୀବନ ରଙ୍ଗ ସଂସ୍ଥା ପକ୍ଷରୁ ସମ୍ମାନିତ । ଚିତ୍ର ଅଙ୍କନ କରିବା ଓ ପେଣ୍ଟିଂ କରିବା ତାଙ୍କର ଅନ୍ୟ ଏକ ରୁଚି । ବର୍ତ୍ତମାନ ଫୁଲବାଣୀ ସରକାରୀ କଲେଜରେ ଅର୍ଥନୀତି ବିଭାଗରେ ଅଧ୍ୟାପନା କରୁଛନ୍ତି ।

—୦—

## ଶ୍ରୀ ବିଜୟ ଚନ୍ଦ୍ର ମହାପାତ୍ର

ଶ୍ରୀ ମହାପାତ୍ରଙ୍କ ଜନ୍ମ ଗଞ୍ଜାମ ଜିଲ୍ଲା ସୋରଡ଼ା ସହରରେ ତା ୧୫ । ୭ । ୧୯୩୨ ରେ । ଶିକ୍ଷାଗତ ଯୋଗ୍ୟତା ବି. ଏ. ବି. ଇ. ଡ଼. ଓ ବଙ୍ଗଳା ଭାଷାରେ ଡ଼ିପ୍ଲୋମା । ୧୯୬୪ ରୁ ଲେଖା ଆରମ୍ଭ କରିଛନ୍ତି । ବିଶେଷ କରି ଅନୁବାଦ ଓ ପ୍ରବନ୍ଧ ଉପରେ ଗୁରୁତ୍ୱ ଦେଇଛନ୍ତି । ତାଙ୍କର ପ୍ରକାଶିତ ପୁସ୍ତକ ସମୂହ ୧- ସାବିତ୍ରୀ ଚରିତ ( ବ୍ୟାସ ) ୨- ଶାଶ୍ୱତ ଜଗନ୍ନାଥ ୩- ଅମୂଲ୍ୟ ମନ ୪- ମୃଣ୍ମୟୀ ୫- ସୂର୍ଯ୍ୟମୁଖୀ ୬- ଆର୍ତ୍ତତ୍ରାଣ ଚଉତିଶା ( ଘନକୃଷ୍ଣ ) ବହୁ ପ୍ରତିଷ୍ଠିତ ପ୍ରକାଶକ ମାନଙ୍କ ଦ୍ୱାରା ପ୍ରକାଶିତ । ଏତଦ୍ ବ୍ୟତୀତ ବିଭିନ୍ନ ସମୟରେ ପତ୍ର ପତ୍ରିକା ମାଧ୍ୟମରେ ନିଜସ୍ୱ ଅଭିମତ ପ୍ରଦାନ କରି ଥାଆନ୍ତି । ଭାଷାରୁ ବିକୃତ ଶବ୍ଦ ଦୂରୀକରଣ ନିମନ୍ତେ ସେ ସଚେତନ । ୧୯୬୫ ରୁ ଫୁଲବାଣୀରେ ରହି ଆସୁଛନ୍ତି ଓ ବର୍ତ୍ତମାନ ସେ ଫୁଲବାଣୀର ସ୍କୁଲ ସମୂହର ସଂଯୁକ୍ତ ଅନୁନିରୀକ୍ଷକ ରୂପେ ଅବସ୍ଥାପିତ ।

—o—

## ଡା. ବିଭୂତିଭୂଷଣ ନାୟକ

ପୁରୀ ଜିଲ୍ଲା କପିଳେଶ୍ୱରପୁର ଗ୍ରାମରେ ତା ୨୦ । ୨ । ୧୯୫୮ ରେ ଜନ୍ମ । ପିତା ଶ୍ରୀ ଶ୍ରୀନିବାସ ନାୟକ । ଏମ୍. ବି. ବି. ଏସ. ଶିକ୍ଷା ଶେଷ ସମାପ୍ତି ପରେ ସରକାରୀ ଚିକିତ୍ସକ ଭାବେ ନିଯୁକ୍ତ । ବର୍ତ୍ତମାନ ଫୁଲବାଣୀ ସଦର ଚିକିତ୍ସାଳୟରେ କାର୍ଯ୍ୟରତ । ୧୯୭୩ ଛାତ୍ରାବସ୍ଥାରୁ ବିଭିନ୍ନ ପତ୍ର ପତ୍ରିକାକୁ ଗଳ୍ପ, କବିତା ଲେଖି ପଠାଇବାରେ ବିଶେଷ ଆଗ୍ରହ ପ୍ରକାଶ କରି ଆସୁଛନ୍ତି । ତାଙ୍କର ଗଳ୍ପ ସଂକଳନ ' ନିଜସ୍ୱ ସଂପର୍କ ' ପ୍ରକାଶ ଅପେକ୍ଷାରେ ।

* * *

## ସ୍ୱର୍ଗତ ଶ୍ରୀ ବଂଶୀଧର ମହାକୁଡ

୰ ବଂଶୀଧର ମହାକୁଡଙ୍କ ଜନ୍ମ ଫୁଲବାଣୀ ଜିଲ୍ଲା ଫିରିଙ୍ଗିଆ ଥାନାନ୍ତର୍ଗତ ଉଚଙ୍ଗ ଗ୍ରାମରେ ୧୯୦୬ ରେ । ପିତା ୰ ଶ୍ରଦ୍ଧାକର ମହାକୁଡ । ଶିକ୍ଷାଗତ ଯୋଗ୍ୟତା ମାଟ୍ରିକ ଫେଲ ଓ ବ୍ୟବସାୟ କୃଷି । ୧୯୪୦ ରେ ଲେଖା ଆରମ୍ଭ କରିଥିଲେ । ବିଶେଷ କରି ଗାଁ ଗହଳୀରେ ଆଦୃତ ହେଉଥିବା ଦଣ୍ଡନାଚ ନିମନ୍ତେ ଦଣ୍ଡନାଚ ଗୀତ ସୃଷ୍ଟି କରୁଥିଲେ । ୰ ମହାକୁଡ ୬୪ ବର୍ଷ ବୟସରେ ତା ୩୧ । ୧ । ୧୯୬୦ ରେ ସ୍ୱର୍ଗାରୋହଣ କରିଛନ୍ତି ।

—୦—

## ଶ୍ରୀ ଭୀଷ୍ମ ବେହେରା

ତା ୧୫ । ୮ । ୧୯୫୨ ରେ ବଲାଙ୍ଗୀର ଜିଲ୍ଲା ମାଲମୁଣ୍ଡା ଗ୍ରାମରେ ଶ୍ରୀ ବେହେରାଙ୍କ ଜନ୍ମ । ପିତା ୰ ଖମାନିଧି ବେହେରା ଓ ମାତା ଜଉଆ ବେହେରା । ମାଟ୍ରିକ୍ ଶିକ୍ଷା ସମାପ୍ତି ପରେ ସରକାରୀ ଚାକିରୀରେ ଅବସ୍ଥାପିତ । ବର୍ତ୍ତମାନ ଫୁଲବାଣୀ ସଦର ମହକୁମା ଶିକ୍ଷାଳୟରେ କାର୍ଯ୍ୟରତ । ନବମ ଶ୍ରେଣୀରେ ଅଧ୍ୟୟନ କଲା ସମୟରୁ ଲେଖା ଆରମ୍ଭ କରିଛନ୍ତି । ଭକ୍ତି ମୂଳକ ଓ ଦେଶାତ୍ମ-ବୋଧ କବିତା ରଚନା କରନ୍ତି । ୧୯୮୧ ରୁ ସେ ଏହି ଜିଲ୍ଲାରେ ରହିଛନ୍ତି ।

—୦—

## ଡଃ ମଥୁରାନାଥ ହୋତା

ତା ୮ । ୮ । ୧୯୫୫ ରେ ବାଲେଶ୍ୱର ଜିଲ୍ଲା ନୀଳଗିରି ଥାନାନ୍ତର୍ଗତ କୁଲୁଡ଼ା ଗ୍ରାମରେ ଜନ୍ମ । ଶିକ୍ଷାଗତ ଯୋଗ୍ୟତା ଏମ୍. ଏ. ( ସଂସ୍କୃତ ଭାରତୀ ) ପି. ଏଚ୍. ଡି. । ୧୯୭୮ ରୁ ଲେଖା ଆରମ୍ଭ କରନ୍ତି ଓ ଗବେଷଣା ମୂଳକ ଲେଖା

ପ୍ରତି ବିଶେଷ ଆଗ୍ରହ ପ୍ରକାଶ କରନ୍ତି । ତାଙ୍କର ପ୍ରକାଶିତ ପୁସ୍ତକ ଗୁଡ଼ିକ ୧- ଘଣ୍ଟି ରାଉତ ରଘୁଙ୍କ ପାଣ୍ଡୁଲିପି ଏକ ନୂତନ ଯୁଗର ପ୍ରସ୍ତୁତି । ( ପି. ଏଚ୍. ଡ଼ି. ଥେସିସ ) ୨- ଧୂସର ପୃଥିବୀ ଓ ବିଶ୍ବାସର ଆକାଶ ୩- ଜୀବନ ତୀର୍ଥରେ କବି କମଳାକାନ୍ତ । ପାଣ୍ଡୁଲିପି , ବାବା ମଧୁସୂଦନ ପ୍ରକାଶ ଅପେକ୍ଷାରେ । ବିଭିନ୍ନ ସାଂସ୍କୃତିକ ସଭା ସମିତି ଓ ପାଠ ଚକ୍ରରେ ଅଂଶ ଗ୍ରହଣ କରନ୍ତି । ସଂପ୍ରତି ଫୁଲବାଣୀ ମହାବିଦ୍ୟାଳୟର ଓଡ଼ିଆ ବିଭାଗରେ ଅଧ୍ୟାପକ ରୂପେ ଅବସ୍ଥାପିତ ।



## ଶ୍ରୀ ମନୀନ୍ଦ୍ର ରାଉତ

୧୯୫୩ ମସିହା ଡ଼ିସେମ୍ବର ମାସ ବାର ତାରିଖରେ ଗଞ୍ଜାମ ଜିଲ୍ଲା ବ୍ରହ୍ମପୁର ସହର ରାମକୃଷ୍ଣ ନଗରରେ ଜନ୍ମ । ପିତା ଶ୍ରୀ ଖଳି ରାଉତ ଓ ମାତା ଲାବଣ୍ୟ ରାଉତ । ଶିକ୍ଷାଗତ ଯୋଗ୍ୟତା ଏମ୍ ଏ. ( ଇଂରାଜୀ ) ଓ ଏଲ୍. ଏଲ୍. ବି. । ଗତ ୩ ବର୍ଷରୁ ଊର୍ଦ୍ଧ୍ବ ହେବ ଫୁଲବାଣୀରେ ଅବସ୍ଥାନ କରି ଓକିଲାତି ବ୍ୟବସାୟ କରୁଛନ୍ତି । ୧୯୬୯ ମସିହାରୁ ଲେଖା ପ୍ରତି ମନ ବଳାଇଛନ୍ତି । କବିତା, ଗଳ୍ପ, ନାଟକ ଆଦିର ରଚନା କରନ୍ତି । ତାଙ୍କର ପାଣ୍ଡୁଲିପି ଅଂଧ ଗଳି [କବିତା] ବଣଫୁଲ; ଭଗ୍ନ ଅଙ୍ଗାର [ନାଟକ] ମୋ କଥା [ଗଳ୍ପ ସଂକଳନ] ପ୍ରକାଶ ଅପେକ୍ଷାରେ । ୧୯୭୫ ରେ ବ୍ରହ୍ମପୁର ଠାରେ ଅନୁଷ୍ଠିତ ବକ୍ତୃତା ଆସରରେ ଶ୍ରେଷ୍ଠ ବକ୍ତା ଭାବେ ପୁରସ୍କୃତ । ବିଶ୍ବ ବିଦ୍ୟାଳୟ ସ୍ତରରେ ବହୁବାର ନାଟକ ଓ ତର୍କ ପ୍ରତିଯୋଗୀତାରେ ମଧ୍ୟ ପୁରସ୍କୃତ । ନାଟକରେ ଅଂଶ ଗ୍ରହଣ କରିବା ଓ ବିଭିନ୍ନ ସାରସ୍ବତ କାର୍ଯ୍ୟକ୍ରମରେ ଅଂଶ ଗ୍ରହଣ କରିବା ଶ୍ରୀ ରାଉତଙ୍କର ଏକ ହବି ।

— ○ —

## ମହମ୍ମଦ ଜାକର ଅକ୍ତାର

ପୁରୀ ଜିଲ୍ଲା କଟକଣରେ ଶ୍ରୀ ଅକ୍ତାର ଜନ୍ମ ଗ୍ରହଣ କରିଥିଲେ ଦେ଼ ପ୍ରକୃତରେ କର୍ମମୟ ଜୀବନ ଆରମ୍ଭ କରନ୍ତି ଫୁଲବାଣୀ ଜିଲ୍ଲାରେ । ଗତ ୪୦ ବର୍ଷରୁ ଉର୍ଦ୍ଧ୍ୱ କାଳ ଧରି ଅବହେଳିତ ଫୁଲବାଣୀ ଜିଲ୍ଲାରେ ନିଜକୁ ଜନ ସେବାରେ ନିୟୋଜିତ କରିଛନ୍ତି । ସେ ଜଣେ ଚେତନଶୀଳ ନାଗରିକ ଓ ସରକାରୀ ବହୁ ଅନୁଷ୍ଠାନ ସହ ସଂପୃକ୍ତ । ସାମ୍ବାଦିକତା ତାଙ୍କର ପେଶା । ସେ ଏହି ଜିଲ୍ଲାର ବୟସ୍କ ସାମ୍ବାଦିକ ମାନଙ୍କ ମଧ୍ୟରୁ ଅନ୍ୟତମ ଓ ଓଡ଼ିଶା ସରକାରଙ୍କ ସ୍ୱୀକୃତିପ୍ରାପ୍ତ ସାମ୍ବାଦିକ ଭାବେ ପରିଗଣିତ । ଦୀର୍ଘ ଦିନ ଧରି ନିରବଚ୍ଛିନ୍ନ ଭାବେ ସେ ପ୍ରଜାତନ୍ତ୍ରର ଜିଲ୍ଲା ପ୍ରତିନିଧି ଭାବେ କାର୍ଯ୍ୟ କରି ଆସୁଛନ୍ତି ଓ ଇଂରାଜୀ ପତ୍ରିକା ଇଣ୍ଡିଆନ୍ ଏକ୍ସପ୍ରେସର ଫୁଲବାଣୀ ପ୍ରତିନିଧି ଭାବେ ଅବସ୍ଥାପିତ । 'ସଂଗ୍ରାମ' ନାମକ ସାପ୍ତାହିକ ସମ୍ବାଦ, ସମାଲୋଚନା ପତ୍ରିକା ତାଙ୍କ ସମ୍ପାଦନାରେ ୧୯୬୭ ରୁ ୧୯୭୯ ପର୍ଯ୍ୟନ୍ତ ପ୍ରକାଶ ପାଉଥିଲା । ସେ ସାମାଜିକ ସଂସ୍କାର ମୂଳକ ଗଳ୍ପ, ପ୍ରବନ୍ଧ ଓ କବିତା ରଚନା କରନ୍ତି । ବିଷୁବ ପୁରସ୍କାର ଦୈନିକ ଆଶା ପ୍ରତିଷ୍ଠାନରୁ ପୁରସ୍କାର ପ୍ରାପ୍ତ ଏବଂ ବହୁ ସରକାରୀ ବେସରକାରୀ ଅନୁଷ୍ଠାନ ପକ୍ଷରୁ ଏକାଧିକବାର ପୁରସ୍କୃତ । ଗତ ଜରୁରୀକାଳୀନ ପରିସ୍ଥିତି ସମୟରେ ମିସାରେ ବନ୍ଦୀ ହୋଇ କିଛି କାଳ ପାଇଁ ଜେଲ୍ ବରଣ କରିବାରେ ସେ ଏହି ଜିଲ୍ଲାର ପ୍ରଥମ ସାମ୍ବାଦିକ ମଧ୍ୟ ।

—o—

## ଶ୍ରୀ ମିହିରକାନ୍ତ ପାଢ଼ୀ

ଗଞ୍ଜାମ ଜିଲ୍ଲା ପାରଳାଖେମୁଣ୍ଡି ନିକଟସ୍ଥ ପାଢ଼ୀସାହିରେ ୧୯୬୩ ମସିହା କୃଷ୍ଣପକ୍ଷ ଫାଲଗୁନ ତୃତୀୟାରେ ଜନ୍ମ । ପିତା ଶ୍ରୀ ରଘୁନାଥ ପାଢ଼ୀ ଓ ମାତା

ଶ୍ରୀମତୀ ସୁଧାଂଶୁବାଳା ପତ୍ନୀ । ଶିକ୍ଷାଗତ ଯୋଗ୍ୟତା ଯାତକୋତର [ ରାଜନୀତି ବିଜ୍ଞାନ ] । ସଂପ୍ରତି ରାଜ୍ୟ ସରକାରଙ୍କ ଅଧୀନରେ ଗ୍ରାମସେବକ ରୂପେ କାର୍ଯ୍ୟ ସଂପାଦନ କରୁଛନ୍ତି । ୧୯୮୦ ରୁ ଗଳ୍ପ, କବିତା ଓ ନାଟକ ରଚନା ଆରମ୍ଭ କରିଛନ୍ତି । ତାଙ୍କର ଅପ୍ରକାଶିତ ପାଣ୍ଡୁଲିପି ପାଞ୍ଚପଇସିର ପାଗଳ ( ନାଟକ ) ୨- ଧୂସର ଜଗତ ଓ ରୁଦ୍ଧସ୍ୱର । ଗତ ସାତ ବର୍ଷ ହେବ ସେ ଫୁଲବାଣୀରେ ରହି ଆସୁଛନ୍ତି ।



## ୬ ଡାକ୍ତର ମେଦନୀଶ୍ୱର ମଲ୍ଲିକ

ଫୁଲବାଣୀ ଜିଲ୍ଲାର ବାରନଅସିଂହପୁର ନିକଟସ୍ଥ ଏକ କ୍ଷୁଦ୍ର ପଲ୍ଲୀ ବଲବାଡ଼ି ଠାରେ ତା ୧୮ । ୭ । ୧୯୧୨ ଈଖରେ ଶ୍ରୀ ମେଦନୀଶ୍ୱର ମଲ୍ଲିକଙ୍କର ଜନ୍ମ । ତାଙ୍କର ପିତାଙ୍କ ନାମ ୬ ଦାଶରଥି ମଲ୍ଲିକ ଓ ମାତାଙ୍କ ନାମ ୬ ଲୁଦୁନା ଦେଈ । ମାଟ୍ରିକ୍ୟୁଲେସନ ପାଶ ପରେ ଶ୍ରୀ ମଲ୍ଲିକ ଏଲ୍. ଏମ୍. ପି. ଶିକ୍ଷାଲାଭ କରି ଡାକ୍ତରୀ ବୃତ୍ତିରେ ପ୍ରବେଶ କରିଥିଲେ ଓ ୧୯୬୯ ମସିହାରୁ ଅବସର ଗ୍ରହଣ କରି ଫୁଲବାଣୀ ମୁଖ୍ୟ ଡାକଘର ନିକଟସ୍ଥ ତାଙ୍କର ନିଜ ବାସଗୃହରେ ଅବସ୍ଥାନ କରୁଥିଲେ । ଶ୍ରୀ ମଲ୍ଲିକ ଶିକ୍ଷାପ୍ରଦ ବହୁ ପ୍ରବନ୍ଧ ଓ କବିତା ରଚନା କରିଛନ୍ତି ଓ ସେଗୁଡ଼ିକ ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶ ପାଇଛି । ତାଙ୍କ ଦ୍ୱାରା ରଚିତ ଓ ପ୍ରକାଶିତ କବିତା ପୁସ୍ତିକା ଭାଇ ଭଉଣୀ ୧୯୭୨ ରେ ପ୍ରକାଶିତ । ସେହି ବର୍ଷ ଅନ୍ୟ ଏକ କବିତା ପୁସ୍ତିକା କନ୍ଧମାଳ ମଧ୍ୟ ପ୍ରକାଶିତ । ୧୯୮୦ ରେ ତାଙ୍କ ଦ୍ୱାରା ରଚିତ ଓ ପ୍ରକାଶିତ କନ୍ଧ ଓ କନ୍ଧମାଳ ନାମକ ପ୍ରବନ୍ଧ ପୁସ୍ତକ ପାଠକ ମହଲରେ ବିଶେଷ ଭାବେ ଆଦୃତ । ଏହି ପୁସ୍ତକରେ କନ୍ଧ ମାନଙ୍କ ଜନ୍ମ ଠାରୁ ଫୁଲବାଣୀରେ ବିଟ୍ରିଶ ରାଜତ୍ୱ ବିଷୟ ବର୍ଣ୍ଣନା କରାଯାଇଛି ।

ଶ୍ରୀ ଜଗନ୍ନାଥଙ୍କ ମହିମା ଓ ଜଣାଣ ଓ କୁଇ [କନ୍ଧ] ଭାଷା ପରିଚୟ ମଧ୍ୟ ଶ୍ରୀ ମଲ୍ଲିକଙ୍କ ଅନ୍ୟ ଦୁଇଟି କୃତି । ନିଜ କଥା ନାମକ ଆତ୍ମ ଜୀବନୀ [ଅପ୍ରକାଶିତ] ଶ୍ରୀ ମଲ୍ଲିକଂକ ଦ୍ୱାରା ସଂପୂର୍ଣ୍ଣ ହୋଇଛି । ଶ୍ରୀ ମଲ୍ଲିକ ୧୯୪୧ ରୁ ୧୯୪୭ ପର୍ଯ୍ୟନ୍ତ ଯୁଦ୍ଧ କ୍ଷେତ୍ରରେ ଆହତ ସୈନ୍ୟ ମାନଂକ ସେବାରେ ନିଜକୁ ନିୟୋଜିତ କରି ବିଶେଷ ପ୍ରଶଂସା ଭାଜନ ହୋଇଥିଲେ । ମେଦନଶ୍ୱର ମଲ୍ଲିକ ଜାନୁୟାରୀ ୫ ତାରିଖ ୧୯୮୯ ମସିହାରେ ସ୍ୱର୍ଗାରୋହଣ କରିଛନ୍ତି ।



## ଶ୍ରୀ ରବୀନ୍ଦ୍ରନାଥ ମିଶ୍ର

ଶ୍ରୀ ରବୀନ୍ଦ୍ରନାଥ ମିଶ୍ରଙ୍କ ଜନ୍ମ କଟକ ଜିଲ୍ଲା ନରସିଂହପୁର ଥାନା ଗୋକଳବା ଗ୍ରାମରେ ତା ୬।୧।୧୯୪୫ ରେ । ଶିକ୍ଷାଗତ ଯୋଗ୍ୟତା ଏମ୍. ଏ. ବି. ଇ. ଡି. ଏଲ୍. ଏଲ୍. ବି. । ଶ୍ରୀ ମିଶ୍ର ଏବେ ଫୁଲବାଣୀରେ ଓକିଲାତି କରୁଛନ୍ତି । ୧୯୬୭ ରୁ ଗଳ୍ପ, କବିତା, ପ୍ରବନ୍ଧ, ଗୀତ ଲେଖା ଓ ଶିଶୁ ସାହିତ୍ୟ, କବିତା ଆଦି ସୃଷ୍ଟି କରିବା ଉଦ୍ୟମ ଚାଲୁ ରଖିଛନ୍ତି । ୧୯୬୬ ରେ ସାଗ୍ନି କବିତା ସଂକଳନ ଶ୍ରୀ ମିଶ୍ରଙ୍କ ଦ୍ୱାରା ସଂପାଦିତ । ପୂର୍ବ ସଗର କବିତା ଏବେ ଯନ୍ତ୍ରସ୍ଥ । ପାଣ୍ଡୁଲିପି ଗୁଡ଼ିକ ହେଲା ଏଇ ଆଖି କେତେ ଲୁହ [ଉପନ୍ୟାସ] ନିଜ ପାଇଁ ନିଜେ [ଉପନ୍ୟାସ] 'ସଂବିତ' ମାସିକ ସାହିତ୍ୟ ପତ୍ରିକାର ଶ୍ରୀ ମିଶ୍ର ସମ୍ପାଦକ ଓ ଅଞ୍ଚଳରେ ଶିଶୁ ପତ୍ରିକା ଫୁଲକଳି ମଧ୍ୟ ତାଙ୍କ ଦ୍ୱାରା ସଂପାଦିତ ହୋଇଥିଲା । ଗତ ୭ ବର୍ଷରୁ ଊର୍ଦ୍ଧ୍ୱ କାଳ ହେବ ସେ ଫୁଲବାଣୀରେ ରହି ଆସୁଛନ୍ତି . ଓ ଜିଲ୍ଲାର ବହୁ ସାହିତ୍ୟାନୁଷ୍ଠାନର ସକ୍ରିୟ ସଭ୍ୟ ହୋଇଛନ୍ତି । ଶ୍ରୀ ରବୀନ୍ଦ୍ରନାଥ ମିଶ୍ରଙ୍କ ପିତା ଶ୍ରୀ ପ୍ରାଣକୃଷ୍ଣ ମିଶ୍ର ଓ ମାତା ଶ୍ରୀମତୀ ସୁନାମଣି ମିଶ୍ର । ବର୍ତ୍ତମାନର ଯୋଗାଯୋଗ ଠିକଣା- ଆଡ୍‌ଭୋକେଟ, ଫୁଲବାଣୀ ।

— ୦ —

## ଶ୍ରୀ ରାଜୀବ କୁମାର ପ୍ରଧାନ

ଜନ୍ମ ତା ୨୧ । ୧୧ । ୧୯୫୯ ରେ ଢେଙ୍କାନାଳ ଜିଲ୍ଲା କାମାକ୍ଷାନଗର ନିକଟ ଅଭିରଗାଳ ଗ୍ରାମରେ । ପିତା ଶ୍ରୀ ଦେବେନ୍ଦ୍ର କୁମାର ପ୍ରଧାନ ଓ ମାତା ଶ୍ରୀମତୀ ରାଜେଶ୍ୱରୀ ପ୍ରଧାନ । ବି. କମ୍ ଓ ଏଲ୍. ଏଲ୍. ବି. ପାସ କଲାପରେ ଓକିଲାତି ବ୍ୟବସାୟ ଆରମ୍ଭ କରିଛନ୍ତି । ଓକିଲାତି ବ୍ୟବସାୟରେ ଲିପ୍ତ ରହି ମଧ୍ୟ ୧୯୭୮ ରୁ ଲେଖା ଲେଖିରେ ମନୋନିବେଶ କରିଛନ୍ତି । କ୍ଷୁଦ୍ର ଗଳ୍ପ ଓ କବିତା ସୃଷ୍ଟି କରିବାରେ ତାଙ୍କର ଆନନ୍ଦ । ଗତ ଦେଢ଼ ବର୍ଷ ହେବ ଫୁଲବାଣୀରେ ରହି ଆସୁଛନ୍ତି ।



## ଶ୍ରୀ ରାଧାମୋହନ ମିଶ୍ର

ଶ୍ରୀ ମିଶ୍ରଙ୍କର ଜନ୍ମ ଗଞ୍ଜାମ ଜିଲ୍ଲା ନୁଣିପଡ଼ା ନିକଟ ପ୍ରତାପଲକ୍ଷ୍ମଣପୁର ଗ୍ରାମରେ ତା ୫ । ୪ । ୧୯୪୯ ରେ । ପିତା ଶ୍ରୀ ଗଙ୍ଗାଧର ମିଶ୍ର ଓ ମାତା ଦ୍ରୌପଦୀ ଦେବୀ । ଏମ୍. ଏ. ( ଓଡ଼ିଆ ) ପରେ ଅଧ୍ୟାପକ ଭାବେ ନିଯୁକ୍ତି ପାଇ ବର୍ତ୍ତମାନ ଫୁଲବାଣୀ ମହାବିଦ୍ୟାଳୟରେ ଅଧ୍ୟାପକ ଭାବେ କାର୍ଯ୍ୟ କରୁଛନ୍ତି । ଶ୍ରୀ ମିଶ୍ର ଛାତ୍ରାବସ୍ଥାରୁ ଲେଖା ଆରମ୍ଭ କରିଛନ୍ତି । କବିତା, ଗଳ୍ପ, ପ୍ରବନ୍ଧ ରଚନାରେ ସେ ସିଦ୍ଧହସ୍ତ । ଅନେକ ଲେଖା ଇପ୍ସିତା, ବନମାଳା, ଏଷଣା, ଅଧୁନା ଓ ବିଭିନ୍ନ ସ୍କୁଲ କଲେଜର ମୁଖପତ୍ରରେ ପ୍ରକାଶିତ । ଅପ୍ରକାଶିତ କବିତା ସଂକଳନ ପ୍ରକାଶ ଅପେକ୍ଷାରେ । ଦୀର୍ଘ ୭ ବର୍ଷ ହେବ ଶ୍ରୀ ମିଶ୍ର ଫୁଲବାଣୀରେ ଅବସ୍ଥାନ କରୁଛନ୍ତି । ଫୁଲବାଣୀ ଯୁବ ଲେଖକ ସାନ୍ନିଧ୍ୟର ସଭାପତି ରୂପେ କାର୍ଯ୍ୟଭାର ବହନ କରିଛନ୍ତି ।



## ଶ୍ରୀ ଲକ୍ଷ୍ମୀଧର ନାୟକ

ଫୁଲବାଣୀ ଜିଲ୍ଲା କେଳାପଡ଼ା ଗ୍ରାମରେ ୧୯୩୨ ରେ ଶ୍ରୀ ନାୟକଙ୍କ ଜନ୍ମ । ପିତା ନରସିଂହ ନାୟକ ଓ ମାତା ବୈଦେହୀ । ଶିକ୍ଷାଗତ ଯୋଗ୍ୟତା ଷଷ୍ଠ ଶ୍ରେଣୀ । ବ୍ୟବସାୟ କୃଷି । ଜଣାଣ ରଚନା କରନ୍ତି । ଫୁଲବାଣୀ ଜିଲ୍ଲା [ ଦାଃ ] ସମାଜ ସିରିଗିଁଆ ଅଞ୍ଚଳର ମୁଖ୍ୟ ସମ୍ପାଦକ ।

—o—

## ଶ୍ରୀ ଶାନ୍ତନୁ କୁମାର ସ୍ୱାଇଁ

ଶ୍ରୀ ଶାନ୍ତନୁ କୁମାର ସ୍ୱାଇଁଙ୍କ ଜନ୍ମ ତା ୭ । ୮ । ୧୯୫୭ ରେ ଗଞ୍ଜାମ ଜିଲ୍ଲା ଘାଟକୁମରଡ଼ା ଗ୍ରାମରେ । ପିତା ଶ୍ରୀ ଦୁର୍ଯ୍ୟୋଧନ ସ୍ୱାଇଁ ଓ ମାତା ଶ୍ରୀମତୀ ନନ୍ଦାଚନ୍ଦନା ସ୍ୱାଇଁ । ଶିକ୍ଷାଗତ ଯୋଗ୍ୟତା ଏମ୍. ଏ. । ଓଡ଼ିଶା ସରକାରଙ୍କ ଅଧୀନରେ ଜଣେ ତୃତୀୟ ଶ୍ରେଣୀ କର୍ମଚାରୀ ରୂପେ ଫୁଲବାଣୀ ଜିଲ୍ଲାରେ ଅବସ୍ଥାପିତ । ୧୯୭୩ ରୁ ଲେଖା ପ୍ରତି ଆଗ୍ରହ ଜନ୍ମେ ଓ ଗଳ୍ପ, କବିତା, ଉପନ୍ୟାସ, ନାଟକ ରଚନାରେ ନିଜକୁ ସାମିଲ କରନ୍ତି । ତାଙ୍କର ପ୍ରକାଶିତ ଗଳ୍ପ ସଂକଳନ ଦୁଃଖାକ୍ଷର । ଏତଦ୍ ବ୍ୟତୀତ ବହୁ ଗଳ୍ପ ଓ କବିତାର ପାଣ୍ଡୁଲିପି ମଧ୍ୟ ତାଙ୍କ ନିକଟରେ ରହିଛି । ସେଗୁଡ଼ିକ ମଧ୍ୟରୁ ମୁଖ୍ୟତଃ ଶାନ୍ତନୁ ସ୍ୱାଇଁଙ୍କ ଗଳ୍ପ, ଅବହେଳା ଏବଂ ଅନ୍ୟମାନେ ( ଗଳ୍ପ ) ନାଗଜୀର ପ୍ରଳାପ ( ଉପନ୍ୟାସ ) । ଓଡ଼ିଶାର ବିଭିନ୍ନ ସାଂସ୍କୃତିକ ଅନୁଷ୍ଠାନ ସହିତ ସଂଶ୍ଳିଷ୍ଟ । ଅଭିନୟ, ଫଟୋଗ୍ରାଫି ଓ ପତ୍ରାଳାପ ତାଙ୍କର ଜନ୍ମ ରୁଚି ।

—o—

## ଶ୍ରୀ ସଂଗ୍ରାମସିଂହ ପଟ୍ଟନାୟକ

ଶ୍ରୀ ସଂଗ୍ରାମସିଂହ ପଟ୍ଟନାୟକଙ୍କ ଜନ୍ମ ତା ୫ । ୧ ୧୯୫୬ ରେ ଗଞ୍ଜାମ ଜିଲ୍ଲା ବୁଗୁଡାରେ । ତାଙ୍କର ପିତା ୰ ସୋମନାଥ ପଟ୍ଟନାୟକ ଓ ମାତା ଶ୍ରୀମତୀ ସ୍ୱର୍ଣ୍ଣଲତା ପଟ୍ଟନାୟକ । ସମ୍ପ୍ରତି ବଲାଙ୍ଗୀରରେ ସରକାରୀ ଚାକିରୀ କରନ୍ତି ଶିକ୍ଷାଗତ ଯୋଗ୍ୟତା ଏମ୍. ଏ. ( ଡିପ୍ଲୋମା ଇନ୍ ଜର୍ଣ୍ଣାଲିଜମ ) । ୧୯୭୧ ରୁ ଗଳ୍ପ, କବିତା ଓ ଉପନ୍ୟାସ ଲେଖୁଛନ୍ତି । ଫୁଲବାଣୀରୁ ପ୍ରକାଶିତ ସାହିତ୍ୟ ପତ୍ରିକା ବନମାଳାର ସହ ସଂପାଦକ । ଜିଲ୍ଲାର ବହୁ ସାହିତ୍ୟ ଓ ସାହିତ୍ୟ ଅନୁଷ୍ଠାନ ସହ ସଂପୃକ୍ତ । ବର୍ତ୍ତମାନର ଠିକଣା ମାଷ୍ଟରପଡା, ଜି. ଫୁଲବାଣୀ ।

— ୦ —

## ସ୍ୱର୍ଗୀୟ ସାରଥୀ କହଁର

୰ କବି ସାରଥି କହଁର ଫୁଲବାଣୀ ଜିଲ୍ଲା ନୂଆଗାଁ ନିକଟସ୍ଥ ଝିଗଡ଼ପଡ଼ା ନାମକ ଆଦିବାସୀ ଗ୍ରାମରେ ଏକ ଆଦିବାସୀ ପରିବାରରେ ତା ୧୨-୩-୧୯୦୩ ରେ ଜନ୍ମ ଗ୍ରହଣ କରିଥିଲେ । କବିଙ୍କ ପିତାଙ୍କ ନାମ ଅର୍ଜ୍ଜୁନ କହଁର ଓ ମାତାଙ୍କ ନାମ ଜାଇମତି କହଁର । କବି ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ଅଧ୍ୟୟନ କରିଥିଲେ ଓ କୃଷି କାର୍ଯ୍ୟରେ ମନ ଦେଇଥିଲେ । କବିଙ୍କ ଦ୍ୱାରା ୧୯୬୫ ରେ ଆଦ୍ୟ ଧର୍ମ ଗ୍ରନ୍ଥ ଧାର, ୧୯୬୯ ରେ କଳିଯୁଗ ଶେଷମାନ ଇତିହାସ ବିବରଣୀ (ପ୍ରଥମ ଖଣ୍ଡ) ଓ ୧୯୭୦ ରେ କଳିଯୁଗ ଶେଷମାନ ଇତିହାସ ବିବରଣୀର ଦ୍ୱିତୀୟ ଖଣ୍ଡ ପ୍ରକାଶ ପାଇଥିଲା । ୧୯୭୭ ମସିହାରେ କବି ତାଙ୍କର ଜନ୍ମ ମାଟି ଝିଗଡପଡ଼ାରେ ଶେଷ ନିଶ୍ୱାସ ଛାଡ଼ିଥିଲେ ।

×●×

## ଶ୍ରୀ ସୁବାସଚନ୍ଦ୍ର ପ୍ରଧାନ

ଫୁଲବାଣୀ କଣ୍ଟାକ୍ଟର ପଡ଼ାର ଚନ୍ଦ୍ରଧର ପ୍ରଧାନ ଓ ଅନୁସୂୟା ପ୍ରଧାନଙ୍କ ପୁତ୍ର । ସୁବାଷ ଚନ୍ଦ୍ର ପ୍ରଧାନଙ୍କ ଜନ୍ମ ତା ୩ । ୩ । ୧୯୫୯ ରେ । ଏମ୍. ଏ. ପାସ୍ କଲାପରେ ସାମ୍ବାଦିକତା କରୁଛନ୍ତି । ୧୯୮୪ ରୁ ସଂସ୍କୃତ ମୂଳକ ଓ ସମ୍ବାଦ ସାହିତ୍ୟ ରଚନା କରୁଛନ୍ତି । ବନାଗ୍ନି କଳା ସଂଗମ ( ଫୁଲବାଣୀ ) ନାଟକ ବିଭାଗର ସଂପାଦକ ଓ ଓଡ଼ିଶା ପେଡ଼ାଦାର ସାମ୍ବାଦିକ ସଂଘର ସଂପାଦକ; ' ସମ୍ବାଦ ' ପତ୍ରିକାର ଜିଲ୍ଲା ପ୍ରତିନିଧି ପଦ ଲଭିଛନ୍ତି ।

—o –

## ସେଖ୍ ଅବଦୁଲ ସଫିକ୍

ତା ୧୫ । ୯ । ୧୯୫୯ ରେ କଟକ ଜିଲ୍ଲା ହରଦାସପୁର ନିକଟ କୋବାଳିଆ ଗ୍ରାମରେ ସଫିକ୍‌ଙ୍କ ଜନ୍ମ । ପିତା ସେଖ୍ ଗେସୁନା ଅଲ୍ଲୀ । ଓଡ଼ିଆରେ ଏମ୍. ଏ. ପାସ୍ । ସମାଜ ସେବାରେ ମନୋନିବେଶ । କ୍ଷୁଦ୍ର ଗଳ୍ପ, କବିତା ରମ୍ୟ ରଚନା ଓ ପ୍ରବନ୍ଧ ସୃଷ୍ଟି କରନ୍ତି । ୧୯୮୬-୮୭ ରେ ନିପୀଡ଼ିତ ଫୁଲବାଣୀ ପକ୍ଷରୁ ତାଙ୍କର କବିତା ଜୀବନ ସଙ୍ଗୀତ ପ୍ରକାଶିତ । ୧୯୮୩ ରୁ ସେ ଏହି ଜିଲ୍ଲାରେ ଅବସ୍ଥାନ କରୁଛନ୍ତି ।

—o—

## ଶ୍ରୀ ସୀତାରାମ ପଣ୍ଡା

ଶ୍ରୀ ପଣ୍ଡାଙ୍କ ଜନ୍ମ ଗଞ୍ଜାମ ଜିଲ୍ଲା ଭଞ୍ଜନଗରରେ ତା ୩୧ । ୩ । ୧୯୧୧ ଖ୍ରୀଷ୍ଟାବ୍ଦରେ । ପିତା ୰ ଲକ୍ଷ୍ମଣ ପଣ୍ଡା ଓ ମାତା ୰ ମହାଲକ୍ଷ୍ମୀ ପଣ୍ଡା । ଶ୍ରୀ ପଣ୍ଡା ମାଟ୍ରିକୁଲେସନ ପରୀକ୍ଷାରେ ଅକୃତ କାର୍ଯ୍ୟ ହୋଇ ଓଡ଼ିଶା ରାଜ୍ୟ ସରକାରଙ୍କ

ସ୍ୱାସ୍ଥ୍ୟ ବିଭାଗ ଅଧୀନରେ ଫାର୍ମାସିଷ୍ଟ ଭାବେ କାର୍ଯ୍ୟ କରି ବର୍ତ୍ତମାନ ଅବସର ନେଇ ଫୁଲବାଣୀ ସହରରେ ରହୁଆସୁଛନ୍ତି । ସେ ୧୯୬୨ ରୁ ଲେଖା ଲେଖି ଆରମ୍ଭ କରିଛନ୍ତି ଓ ଭକ୍ତି ଗୀତ ରଚନାରେ ସିଦ୍ଧହସ୍ତ । ତାଙ୍କର ପ୍ରକାଶିତ ଭକ୍ତି ପୁସ୍ତିକା ଗୋପାଳ ଜଣାଣ, ଭକ୍ତର ପ୍ରାର୍ଥନା ଯଥାକ୍ରମେ ୧୯୬୨ ଓ ୧୯୮୨ ରେ ପ୍ରକାଶିତ । ଅପ୍ରକାଶିତ ପୁସ୍ତିକା ପାଣ୍ଡୁଲିପି ଏବେ ବି ତାର ପ୍ରକାଶ ଅପେକ୍ଷାରେ । ଫୁଲବାଣୀ ଜିଲ୍ଲାରେ ୧୯୪୦ ଠାରୁ ସେ ରହୁଆସୁଛନ୍ତି ।





## ଶ୍ରୀ ଅଜୟ କୁମାର ମିଶ୍ର

ଉନ୍ନତ ଦେଶ ପ୍ରତିଷ୍ଠିତ ପାଶ୍ଚାତ୍ୟ ସାଂସ୍କୃତିକ ଅନୁଷ୍ଠାନ ଦ୍ୱାରା ନଚର ଚମତ୍କାର ଅଭିନୟ ଓ ପାଶ୍ଚାତ୍ୟ ସୃଷ୍ଟି ପାଇଁ ପୁରସ୍କୃତ ହୋଇଥିବା ଯୁବ ଲେଖକ ଅଜୟ କୁମାର ମିଶ୍ରଙ୍କ ଜନ୍ମ ତା ୧।୭।୧୯୫୭ ରେ ଢେଙ୍କାନାଳ ଜିଲ୍ଲା ଅଠମଲ୍ଲିକରେ। ପିତା ଶ୍ରୀ ଉଦୟନାଥ ମିଶ୍ର ଓ ମାତା ଅରୁଣବାଳା ମିଶ୍ର। ଦର୍ଶନ ଶାସ୍ତ୍ରରେ ଏମ.ଏ. ପାଶ୍ କରି ଶ୍ରୀ ମିଶ୍ର ଯୁ. ଉଦୟଗିରି କଲେଜ ମହାବିଦ୍ୟାଳୟରେ ୧୯୮୧ ଠାରୁ ଦର୍ଶନ ବିଭାଗର ମୁଖ୍ୟ ଅଧ୍ୟାପକ ଭାବେ କାର୍ଯ୍ୟ କରୁଛନ୍ତି। ୧୯୭୪ ଛାତ୍ରାବସ୍ଥାରୁ ସେ କବିତା ଆଦି ସୃଷ୍ଟି କରି ଆସୁଛନ୍ତି। ରମ୍ୟ ରଚନା ସୃଷ୍ଟି କରିବାରେ ସେ ସିଦ୍ଧହସ୍ତ। ବାଣୀକଳସ, ବାଣୀ, ବୀଥିକା, ମଳୟ ସରସୀ, ନିର୍ଝର ପ୍ରଭୃତି ବହୁ ପତ୍ର ପତ୍ରିକାରେ ତାଙ୍କର ଲେଖା ପ୍ରକାଶିତ।

—o—

## ଶ୍ରୀ ଉଗ୍ରସେନ ପ୍ରଧାନ

ଫୁଲବାଣୀ ଜିଲ୍ଲା ନୂଆଗଡ଼ା ନିକଟସ୍ଥ ଅଣ୍ଡ୍ରୁଗୁଡ଼ା ଗ୍ରାମରେ ଜନ୍ମ। ପ୍ରାଥମିକ ସ୍କୁଲ ଶିକ୍ଷକରୁ ଅବସର ଗ୍ରହଣ କରି ବର୍ତ୍ତମାନ ଅଣ୍ଡ୍ରୁଗୁଡ଼ା ଗ୍ରାମରେ ରହୁଛନ୍ତି ଓ କୃଷି କାର୍ଯ୍ୟରେ ଲିପ୍ତ। ଭକ୍ତି ମୂଳକ ଭଜନ ଓ ଜଣାଣ ରଚନା କରନ୍ତି। କୌଣସି ପୁସ୍ତକ ଏ ପର୍ଯ୍ୟନ୍ତ ପ୍ରକାଶ ପାଇ ନ ଥିଲେ ମଧ୍ୟ ସଂଗୀତ ରଚନା କରିବା କାର୍ଯ୍ୟରୁ ଓହରି ଯାଇ ନାହାନ୍ତି। ଶତାଧିକ ସଙ୍ଗୀତ ଅପ୍ରକାଶିତ ଭାବେ ରହିଛି। ତାଙ୍କର ପିତା ୰ଚନ୍ଦ୍ରଧର ପ୍ରଧାନ ଓ ମାତା ୰ମନ୍ଦୋଦରୀ ପ୍ରଧାନ।

—o—

## ଶ୍ରୀ ଉମାଚରଣ ଦଗାଲ

ଶ୍ରୀ ଉମାଚରଣ ଦଗାଲଙ୍କ ଜନ୍ମ ଫୁଲବାଣୀ ଜିଲ୍ଲା ବୁର୍ତ୍ତିନାଜୁ ନିକଟସ୍ଥ ପାର୍ତ୍ତାଗୁଡା ଗ୍ରାମରେ । ତାଙ୍କ ପିତାଙ୍କ ନାମ ୰ ଅଡଧାନ ଦଗାଲ । ଗ୍ରାମ ସ୍କୁଲରେ ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ପଢିବାର ସୁଯୋଗ ପାଇ ଶ୍ରୀ ଦଗାଲ ବର୍ତ୍ତମାନ ଭୁବନେଶ୍ୱରରେ ଏକ ସରକାରୀ କାର୍ଯ୍ୟାଳୟରେ ନିଯୁକ୍ତ ପାଇଛନ୍ତି । ଶ୍ରୀ ଦଗାଲ୍ଙ୍କ ରଚିତ କୁଇ ଖଞ୍ଜା ଗାଡ଼ ପୁସ୍ତିକା ୧୯୮୦ ରେ ପ୍ରକାଶିତ । ନିଜ ମାତୃଭାଷା ' କୁଇ ' ର ପ୍ରଚାର ପାଇଁ ସେ କାର୍ଯ୍ୟ କରିବାକୁ ସଂକଳ୍ପ ବଦ୍ଧ । ତାଙ୍କର ବର୍ତ୍ତମାନର ଠିକଣା :- କ୍ୱାର୍ଟର ନଂ ଏଫ୍. ॥ . ଆଇ. ୭୧.୨ ୟୁନିଟ୍ ୯ ଭୁବନେଶ୍ୱର ।



## ଶ୍ରୀ ଉଗ୍ରବ ଚନ୍ଦ୍ର ଜେନା

୰ ଦୋଳଗୋବିନ୍ଦ ଜେନା ଓ ୰ ଦୁଦୁକା ଦେଈଙ୍କର ପୁତ୍ର ଶ୍ରୀ ଉଗ୍ରବଚନ୍ଦ୍ର ଜେନା ତା ୨୩ । ୫ । ୧୯୪୮ ରେ କଟକ ଜିଲ୍ଲା ଅଣକଣା ଗ୍ରାମରେ ଜନ୍ମ ଗ୍ରହଣ କରିଛନ୍ତି । ଶିକ୍ଷାଗତ ଯୋଗ୍ୟତା ଏମ୍. ଏ. । ଦୁଃଖୀ ଦରିଦ୍ର ଅନାଥଙ୍କ ସେବା କରିବାରେ ନିଜକୁ ନିୟୋଜିତ କରିଛନ୍ତି । ୧୯୭୦ ରୁ ସେ କ୍ଷୁଦ୍ର ଗଳ୍ପ ଓ କବିତା ଲେଖା ଆରମ୍ଭ କରିଛନ୍ତି । ତାଙ୍କର ଶତାଧିକ ଗଳ୍ପ ଓ କବିତା ପ୍ରକାଶ ଅପେକ୍ଷାରେ । ପୂର୍ବ ୧୭ ବର୍ଷରୁ ଊର୍ଦ୍ଧ୍ୱ ଫୁଲବାଣୀ ଜିଲ୍ଲାରେ ବାଲିଗୁଡା ବନବାସୀ ସେବା ସମିତିରେ କାର୍ଯ୍ୟ କରି ଆସୁଛନ୍ତି ।

—୦—

## ଶ୍ରୀ କରୁଣାକର ନାୟକ

ଶ୍ରୀ କରୁଣାକର ନାୟକଙ୍କ ଜନ୍ମ ମ୍. ଉଦୟଗିରି ମଲିକପଡ଼ ଗ୍ରାମରେ ଜାନୁୟାରୀ ମାସ ୧୯୨୪ ମସିହାରେ । ପିତା ଆରତ ନାୟକ ଓ ମାତା କମଳମଣି । ଶିକ୍ଷାଗତ ଯୋଗ୍ୟତା ମେଟ୍ରିକ୍ । ପେଷା ଗୃହ, ଶିଳ୍ପ, ଚାଷକଳା [ ଅବସର ପ୍ରାପ୍ତ ଅନୁବାଦକ ] । ୧୯୪୨ ରୁ ସାହିତ୍ୟ ସେବାରେ ମନୋନିବେଶ । ଆଦିବାସୀ ମାନଙ୍କ ସଂସ୍କୃତିକ ଜୀବନ ଜାଣିପାରିବା ଗଳ୍ପ, କବିତା; ଉପନ୍ୟାସ ଆଦି ରଚନା କରିପାରନ୍ତି । ନାବମୁଦ୍ରଣ [ମୋ ସମୃଦ୍ଧି] ନାମକ ପୁସ୍ତିକା ୧୯୪୫ ରେ ତାଙ୍କ ଦ୍ୱାରା ପ୍ରକାଶିତ । ୧୯୭୨ ମସିହାରେ ପଲ୍ଲୀ ପୁଷ୍ପ ନାମକ ସାହିତ୍ୟ ପତ୍ରିକା ତରୁଣ ଲେଖକ ପରିଷଦ ତରଫରୁ ସଂପାଦନ କରିଥିଲେ । ସେ ଫୁଲବାଣୀ ଜିଲ୍ଲାର ସ୍ଥାୟୀ ବାସିନ୍ଦା । ବର୍ତ୍ତମାନ ଦାରିଙ୍ଗବାଡ଼ି ଥାନା ସିମନବାଡ଼ି ଗ୍ରାମରେ ସପରିବାରେ ଅବସ୍ଥାନ କରୁଛନ୍ତି ।

—୦—

## ଶ୍ରୀ କୈଳାସଚନ୍ଦ୍ର ବରାଳ

ଶ୍ରୀ କୈଳାସ ଚନ୍ଦ୍ର ବରାଳଙ୍କ ଜନ୍ମ ପୁରୀ ଜିଲ୍ଲା ଖୁନାଖେଳା ନିକଟସ୍ଥ ଗୌଡ଼ଆପଡ଼ା ଗ୍ରାମରେ ତା ୨୭ । ୮ । ୧୯୫୩ ରେ । ତାଙ୍କ ପିତାଙ୍କ ନାମ ଦିଗମ୍ବର ବରାଳ ଓ ମାତାଙ୍କ ନାମ ଶ୍ରୀମତୀ ଆସେଲି ବରାଳ । ବି. ଏ. ବି. ଇଡ୍. ପାସ୍ କରି ଶିକ୍ଷକତା କରୁଛନ୍ତି ଓ ବର୍ତ୍ତମାନ ଟିକାବାଲିର ସରକାରୀ ଅଭ୍ୟାସ ମଧ୍ୟ ଇଂରାଜୀ ବିଦ୍ୟାଳୟରେ ରହିଛନ୍ତି । ଶ୍ରୀ ବରାଳ ୧୯୬୭ ରୁ ଗଳ୍ପ ଓ କବିତା ଲେଖା ଆରମ୍ଭ କରିଛନ୍ତି । ବିଭିନ୍ନ କବିତା ଆସର ଓ ନାଟକରେ ସେ ଅଂଶ ଗ୍ରହଣ କରୁଛନ୍ତି । ଗତ ୧୯୮୪ ଠାରୁ ସେ ଫୁଲବାଣୀ ଜିଲ୍ଲାରେ ରହି ଆସୁଛନ୍ତି ।



## ଶ୍ରୀ ଗୋଦାବରୀଶ ମହାପାତ୍ର

ଶ୍ରୀ ଗୋଦାବରୀଶ ମହାପାତ୍ର ଖବର ନରେନ୍ଦ୍ରପୁର ଶାସନ ପୋ ସ୍ଟେସନ ଛପୁ. (ଓଡ଼ିଶା) ଙ୍କ ପୃଷ୍ଠରେ ତା ୧୩।୭।୧୯୪୫ ରେ ଜନ୍ମ ଗ୍ରହଣ କରି-ଛନ୍ତି। ତାଙ୍କର ପିତାଙ୍କ ନାମ ଶ୍ରୀ ଖଳ ମହାପାତ୍ର ଓ ମାତାଙ୍କ ନାମ ଶ୍ରୀମତୀ ମନୋରମା ଦେବୀ। ତାଙ୍କର ଶିକ୍ଷାଗତ ଯୋଗ୍ୟତା ବି.ଏ. ବି. ଇଡି. [ ବନ୍ଧୁ ଭଣ୍ଡା କୋରାପୁଟ ] । ସେ ୧୯୬୫ ରୁ ଲେଖା ଆରମ୍ଭ କରିଛନ୍ତି ଓ କ୍ଷୁଦ୍ର ଗଳ୍ପ, କବିତା, ସଙ୍ଗୀତ ରଚନା କରୁଛନ୍ତି। ଲେଖକଙ୍କର କୌଣସି ଲେଖା ଏ ପର୍ଯ୍ୟନ୍ତ ପ୍ରକାଶ ପାଇ ନ ଥିଲେ ମଧ୍ୟ ତାଙ୍କ ଲେଖା ଶୈଳୀର ସେ ସ୍ୱୀକୃତି ପକାଇ ନାହାନ୍ତି। ବିଭିନ୍ନ କବିତା ଆସର ଓ ନାଟକରେ ଅଂଶଗ୍ରହଣ କରିବାକୁ ଶ୍ରୀ ମହାପାତ୍ର ଖୁବ୍ ପସନ୍ଦ କରନ୍ତି। ସେ ୧୯୭୦ ଠାରୁ ଏ ଜିଲ୍ଲାରେ ବାସ କରୁଛନ୍ତି।



## ଶ୍ରୀ ଗୌରଚନ୍ଦ୍ର ସୁଆର

ଗଞ୍ଜାମ ଜିଲ୍ଲା ଧୁମୁସରରେ ବେଣୀପଲ୍ଲୀ ଗ୍ରାମରେ ତା ୩-୧୦-୫୮ ରେ ଶ୍ରୀ ଗୌରଚନ୍ଦ୍ର ସୁଆରଙ୍କ ଜନ୍ମ। ପିତା ଶ୍ରୀ ବସନ୍ତ ସୁଆର ଓ ମାତା ଶ୍ରୀମତୀ ରହାସ ସୁଆର। ମାଟ୍ରିକ୍ ପାସ୍ କଲାପରେ ବାଲିଗୁଡ଼ାରେ ରହି ସାମ୍ବାଦିକତା କରୁଛନ୍ତି। ୧୯୭୫ ରୁ ଗଳ୍ପ, କବିତା, ନାଟକ, ସମାଲୋଚନା ପ୍ରବନ୍ଧ ଆଦି ରଚନା କରୁଛନ୍ତି। ତାଙ୍କର ପାଣ୍ଡୁଲିପି, ମହାଭାରତ ଏକ ଅଙ୍କିତ ଅଧ୍ୟାୟ ୨- ବାଣାସୁର ୩- ଧ୍ରୁବ ଇତ୍ୟାଦି। ସଂପ୍ରତି ସେ ଫୁଲବାଣୀ ଜିଲ୍ଲାର ସ୍ଥାୟୀ ବାସିନ୍ଦା। ବର୍ତ୍ତମାନର ଠିକଣା - ବାଲିଗୁଡ଼ା, ଫୁଲବାଣୀ।



## ଅଧ୍ୟାପକ ଗୌରୀଶଙ୍କର ହୋତା

ଶ୍ରୀ ହୋତାଙ୍କ ଜନ୍ମ ଗଞ୍ଜାମ ଜିଲ୍ଲା ଧରାକୋଟ ନିକଟସ୍ଥ ଗୋବର୍ଦ୍ଧନପୁର ଗ୍ରାମରେ ତା ୧।୭।୧୯୪୮ ମସିହାରେ । ତାଙ୍କ ପିତାଙ୍କ ନାମ ଶ୍ରୀ ଆର୍ତ୍ତତ୍ରାଣ ହୋତା । ଇଂରାଜୀ ସାହିତ୍ୟରେ ଏମ୍. ଏ. ପାସ କରିଛନ୍ତି ଓ ବି. ଇଡ୍. ଟ୍ରେନିଂ ପାଠ୍ୟକ୍ରମରେ ମଧ୍ୟ କୃତିତ୍ୱ ହାସଲ କରିଛନ୍ତି । ତାଙ୍କର ବହୁ କବିତା ପ୍ରବନ୍ଧ ବିଭିନ୍ନ ସମୟରେ ଦୈନିକ ଆଶା, ନିର୍ଝର; ବାଣୀ ଇତ୍ୟାଦିରେ ପ୍ରକାଶିତ । ଗତ ୭ ବର୍ଷ ହେବ ସେ ଜି. ଉଦୟଗିରିରେ ଅବସ୍ଥାନ କରି ଆସୁଛନ୍ତି ଓ ଜି. ଉଦୟଗିରିସ୍ଥ କଳିଙ୍ଗ ମହାବିଦ୍ୟାଳୟ ଇଂରାଜୀ ବିଭାଗର ମୁଖ୍ୟ ଅଧ୍ୟାପକ ଭାବେ କାର୍ଯ୍ୟ କରୁଛନ୍ତି । ତାଙ୍କର ଅନେକ ଅନୁବାଦ କବିତା ପ୍ରକାଶ ଅପେକ୍ଷାରେ । ଜଣେ ନିଷ୍ଠାପର, ସଚ୍ଚୋଟ ଓ ସ୍ନେହ ବତ୍ସଳ ଅଧ୍ୟାପକ ଭାବେ ସେ ପରିଚିତ ।



## ଶ୍ରୀ ତ୍ରିଲୋଚନ ମିଶ୍ର

୧୯୫୪ ମସିହାରେ କଟକ ଜିଲ୍ଲା ଚଉଦକୁଳଟ ନିକଟସ୍ଥ ତମାଳଶାସନ ଗ୍ରାମରେ ମିଶ୍ରଙ୍କ ଜନ୍ମ । ପିତା ୰ ବାଞ୍ଛାନିଧି ମିଶ୍ର ଓ ମାତା ଚଞ୍ଚଳା ଦେବୀ । ଶିକ୍ଷାଗତ ଯୋଗ୍ୟତା ବି. ଏ. ସାହିତ୍ୟାଚାର୍ଯ୍ୟ ଓ ରାଷ୍ଟ୍ରଭାଷା କୋବିଦ । ବର୍ତ୍ତମାନ ବାଙ୍କୀଗୁଡ଼ା ସରକାରୀ ବାଳିକା ବିଦ୍ୟାଳୟରେ ଶିକ୍ଷକତା କରୁଛନ୍ତି । ୧୯୭୨ ରୁ ଗଳ୍ପ, ନାଟକ ରଚନା କରିବାରେ ମନୋନିବେଶ କରିଛନ୍ତି । କଟକ କଳିଙ୍ଗ ଷ୍ଟୁଡେଣ୍ଟସ୍ ଷ୍ଟୋର ଦ୍ୱାରା ପ୍ରକାଶିତ ତାଙ୍କର ପୁସ୍ତକ ନଢ଼ଘୋଷ ବୃଳଳ ପାଠକ ମହଲରେ ବେଶ ଆଦୃତ । ଯନ୍ତ୍ରରେ ମୁଁ ଯବନ ଓ ଶିଳ୍ପୀ ନାୟିକା ପ୍ରକାଶ ଅପେକ୍ଷାରେ । ୭ ବର୍ଷରୁ ଅଧିକ କାଳ ଧରି ସେ ଫୁଲବାଣୀ ଜିଲ୍ଲାରେ ରହି ଆସୁଛନ୍ତି ।



## ଶ୍ରୀ ଦୀନବନ୍ଧୁ ଡାକୁଆ

ତା ୧୩।୧୦।୫୪ ରେ ଗଞ୍ଜାମ ଜିଲ୍ଲା ବ୍ରହ୍ମପୁର ଥାନା ଆମ୍ବଗଡ଼ ଗ୍ରାମରେ ଜନ୍ମ । ପିତା ଶ୍ରୀ କୃପାସିନ୍ଧୁ ଡାକୁଆ ଓ ମାତା ଶ୍ରୀମତୀ ମହାଦେଇ ଦେବୀ । ଶିକ୍ଷାଗତ ଯୋଗ୍ୟତା ଆଇ. ଏ. । ଓଡ଼ିଶା ଜନ ସ୍ୱାସ୍ଥ୍ୟ ବିଭାଗ ଅଧୀନରେ କାର୍ଯ୍ୟରତ । ୧୯୭୨ ରୁ ସାହିତ୍ୟ ପ୍ରତି ମନ ବଳାଇ ଲେଖା ଆରମ୍ଭ କରନ୍ତି । ଗଳ୍ପ, କବିତା, ରମ୍ୟ ରଚନା ଓ ନାଟକ ରଚନାରେ ଡାକୁଆଙ୍କ ଦକ୍ଷତା ଅଛି । ଏତଦ୍ ବ୍ୟତୀତ ସେ ସୌଖୀନ ନାଟ୍ୟ ସଂସ୍ଥା ଦ୍ୱାରା ମଞ୍ଚସ୍ଥ ବିଭିନ୍ନ ନାଟକରେ ହାସ୍ୟ ଅଭିନୟ କରନ୍ତି । ତାଙ୍କର ବିଭିନ୍ନ ଲେଖା ବିଦ୍ୟାଳୟ ଓ ମହାବିଦ୍ୟାଳୟ ମୁଖପତ୍ର ଏବଂ ସାହିତ୍ୟ ଦେବ ବାର୍ଣ୍ଣରେ ପ୍ରକାଶିତ । ଏକ ନାଟକ ସଂକଳନ ପ୍ରକାଶ ଅପେକ୍ଷାରେ । ବାଣୀ ପତ୍ରିକାର ସଂପାଦନା ମଣ୍ଡଳୀରେ ସେ ଅନ୍ୟତମ ସଭ୍ୟ । ୧୯୬୮ ମସିହାରୁ ଫୁଲବାଣୀ ଜିଲ୍ଲାରେ ବସବାସ କରି ଆସୁଛନ୍ତି । ବର୍ତ୍ତମାନର ଠିକଣା; ଜି. ଉଦୟଗିରି ( ଗୋଲ୍‌ପାର୍କ ) ଜି. ଫୁଲ୍‌ବାଣୀ ।

— ୦ —

## ଶ୍ରୀ ଦୀପକ କୁମାର ବେହେରା

ଦୀପକ କୁମାର ବେହେରାଙ୍କ ଜନ୍ମ ଜି ଉଦୟଗିରିରେ ତା ୧-୪-୧୯୬୦ ପିତା ଶ୍ରୀ ଅର୍ଜୁନ ବେହେରା ଓ ମାତା ଶ୍ରୀମତୀ ଫାତିମା ବେହେରା । ଶ୍ରୀ ବେହେରା ବର୍ତ୍ତମାନ ବି. ଏ. ଏଲ୍. ଏଲ୍. ବି. ଅଧ୍ୟୟନ କରୁଛନ୍ତି । ୧୯୭୭ ରୁ ପ୍ରବନ୍ଧ; ଗଳ୍ପ ଓ ନାଟକାଦି ରଚନା କରୁଛନ୍ତି । ତାଙ୍କର କେତେକ ଲେଖା ବିଭିନ୍ନ ମହାବିଦ୍ୟାଳୟ ମୁଖପତ୍ର ଓ ' ବାଣୀ ' ରେ ପ୍ରକାଶିତ ।

— ୦ —

## ଶ୍ରୀ ଧନୁର୍ଜୟ ବେହେରା

ଫୁଲବାଣୀ ଜିଲ୍ଲା ବେହେରା ଗାଁ ( ବଡ଼ଲଟେଣ୍ଡି ) ରେ ଧନୁର୍ଜୟ ବେହେରାଙ୍କ ଜନ୍ମ । ତାଙ୍କ ପିତାଙ୍କ ନାମ ৺ ଜଗବନ୍ଧୁ ବେହେରା । ଅଷ୍ଟମ ଶ୍ରେଣୀ ପର୍ଯ୍ୟନ୍ତ ଶିକ୍ଷାଲାଭ କରି ଶିକ୍ଷକତା କରୁଥିଲେ ଓ ଅବସର ଗ୍ରହଣ କରି ବର୍ତ୍ତମାନ ଗ୍ରା. ବଡ଼ଡ଼ଙ୍ଗଣା ପୋ. ପସରା ଜି. ଫୁଲବାଣୀରେ ସ୍ଥେ ଅବସ୍ଥାନ କରୁଛନ୍ତି । ଛନ୍ଦବଦ୍ଧ ଗୀତ ରଚନା କରି ଶ୍ରୀ ବେହେରା ଆନନ୍ଦ ପାଇଥାନ୍ତି । ତାଙ୍କର ରଚିତ ଅନେକ ଛନ୍ଦ କବିତା; ଯଦ୍ୟ ଅପ୍ରକାଶିତ ଅବସ୍ଥାରେ ରହିଛି ।

—୦—

## ଶ୍ରୀ ନାରାୟଣ ସାହୁ

ତା ୨୪ । ୧୧ । ୧୯୪୭ ରେ ଫୁଲବାଣୀ ଜିଲ୍ଲା ଶଙ୍କରାଖୋଲ ନିକଟସ୍ଥ ବଡ଼ଲମେଣ୍ଡି ଗ୍ରାମରେ ଜନ୍ମ । ପିତା ৺ ଭରତ ସାହୁ ଓ ମାତା ଦ୍ରୌପଦୀ ସାହୁ । ଶିକ୍ଷାଗତ ଯୋଗ୍ୟତା ମାଟ୍ରିକ୍ୟୁଲେସନ । ୧୯୬୨ ରୁ ଲେଖା ପ୍ରତି ମନ ବଳାନ୍ତି ଓ ଗଳ୍ପ, କବିତା, ପ୍ରବନ୍ଧ, ଶିଶୁମାନଙ୍କ ପାଇଁ ଗଳ୍ପ ମଧ୍ୟ ରଚନା କରନ୍ତି । ତାଙ୍କର ବହୁ ଲେଖା ବନମାଳା ଓ ମୀନାବଜାରରେ ପ୍ରକାଶିତ । ତାଙ୍କର ଅପ୍ରକାଶିତ ଉପନ୍ୟାସ ଦାନ୍ତ ରକ୍ତ ଓ କବିତା ଗଳ୍ପ ସଂକଳନ । ଶ୍ରୀ ସାହୁ ବନମାଳା ସାହିତ୍ୟ ପତ୍ରିକାର ସହ ସଂପାଦକ ଅଛନ୍ତି । ମୋହନ ଦାସ ସାଂସ୍କୃତିକ ପରିଷଦ ତରଫରୁ ସେ ପ୍ରଶଂସା ପତ୍ର ପ୍ରାପ୍ତ ଓ ମହତାବ ଜୟନ୍ତୀ କମିଟି ତରଫରୁ ଉପହାର ପ୍ରାପ୍ତ । ଶ୍ରୀ ସାହୁ ଫୁଲବାଣୀ ଜିଲ୍ଲାର ସ୍ଥାୟୀ ବାସିନ୍ଦା ।

—୦—

## ଶ୍ରୀ ନିରଞ୍ଜନ ବେହେରା

ଶ୍ରୀ ବେହେରଙ୍କ ଜନ୍ମ ଗଞ୍ଜାମ ଜିଲ୍ଲା ବ୍ରହ୍ମପୁର ନିକଟସ୍ଥ ଲଞ୍ଜିପଲ୍ଲୀରେ ତା ୧୨ । ୫ । ୧୯୨୯ ରେ । ପିତା ଗୋପୀନାଥ ବେହେରା ଓ ମାତା ରାଧାରାଣୀ ବେହେରା । ନବମ ଶ୍ରେଣୀ ପରେ ଇ. ଟି. ପାସ୍ କରି ଶିକ୍ଷକତା କରୁଛନ୍ତି । ସେ ହିନ୍ଦି ଭାଷାରେ କୋବିଦ ମଧ୍ୟ ପାସ୍ କରିଛନ୍ତି । ୧୯୫୦ ରୁ ଲେଖା ଆରମ୍ଭ କରିଛନ୍ତି । ପ୍ରକାଶିତ ପୁସ୍ତିକା ଦୁନିଆ ଦେଖ ୨- ବଗୁଲା ବେଣୀ ରହସ୍ୟ ୩- ଦେଶର.ଦଶା ୪- କହ୍ନୁକୁଟୁମ୍ବୀ ମହା ପାପୀ ୫- ଓଡ଼ିଶା କନ୍ୟା ଲକ୍ଷ୍ମୀ ୬- ବେକାର ୭- ଲୋକପ୍ରିୟ ଭଜନ ଅପ୍ରକାଶିତ ଲେଖା, ସ୍ୱପ୍ନ; ଠେଙ୍ଗାଧର, ଆଦିବାସୀ ଗୌରବ; ଭୂମିପରେ ପିଲାଟିଏ ଓ ଆହୁରି ଅନେକ । ସେ ନାଟ୍ୟାଭିନୟରେ ଅଂଶ ଗ୍ରହଣ କରିବା ସଙ୍ଗେ ସଙ୍ଗେ ନାଟ୍ୟ ନିର୍ଦ୍ଦେଶନା ମଧ୍ୟ ଦେଇ ଥାଆନ୍ତି । ୧୯୬୦ ରୁ ଏହି ଜିଲ୍ଲାରେ ରହି ଆସୁଛନ୍ତି । ବର୍ତ୍ତମାନ ଠିକଣା ଚୂନପଙ୍କୀ, ପୋ. ରାଇକିଆ, ଜି. ଫୁଲବାଣୀ ।

—୦—

## ଶ୍ରୀ ନିରଞ୍ଜନ ମହାନ୍ତି

ଶ୍ରୀ ମହାନ୍ତିଙ୍କ ଜନ୍ମ କେନ୍ଦୁଝର ଜିଲ୍ଲା ଆନନ୍ଦପୁର ଥାନା ଚଣ୍ଡିଶିଆ ନିକଟସ୍ଥ ହାବଳେଶ୍ୱର ଗ୍ରାମରେ ୧୯୪୬ ମସିହାରେ । ୧୯୬୩ ମସିହାରୁ ଜି. ଉଦୟଗିରିରେ ତାଙ୍କର କର୍ମମୟ ଜୀବନ ଆରମ୍ଭ ହୁଏ । ତାଙ୍କର ଶିକ୍ଷାଗତ ଯୋଗ୍ୟତା ବି. ଏସ୍. ସି. ବି. ଇଡ଼. । ୧୯୬୦ ରୁ ଲେଖା ପ୍ରତି ମନ ବଳାଇ ଅନେକ କ୍ଷୁଦ୍ର ଗଳ୍ପ ଓ କବିତା ରଚନା କରନ୍ତି ଯାହାକି ବାମପନ୍ଥୀ ଚିନ୍ତାଧାରା ଉପରେ ପର୍ଯ୍ୟବେସିତ । ତାଙ୍କ ସଂପାଦନାରେ ମଶାଲ ଓ ଗଣଚେତନା ପତ୍ରିକା ଜି. ଉଦୟଗିରିରୁ ପ୍ରକାଶ ପାଏ । ସେ ଜଣେ ସମାଜସେବୀ ଭାବେ

ପଣିତ । ତାଙ୍କର ପରିଚାଳନାରେ ଏକ ଅନାଥ ଶିଶୁ ଆଶ୍ରମ ପରିଚାଳିତ । ସେ ସାମାଜିକ ଭାବେ ଜି. ଉଦୟଗିରି ଅଞ୍ଚଳର ଜନ ସାଧାରଣଙ୍କ ସେବାରେ ମଧ୍ୟ ନିଜକୁ ନିୟୋଜିତ କରିଛନ୍ତି ।

—o—

## ଶ୍ରୀ ପଞ୍ଚାନନ ଭୋଇ

. ଶ୍ରୀ ପଞ୍ଚାନନ ଭୋଇ ୧୯୩୩ ରେ ଫୁଲବାଣୀ ଜିଲ୍ଲା ଟିକାବାଲି ସଦରରେ ଜନ୍ମ ଗ୍ରହଣ କରିଛନ୍ତି । ଶ୍ରୀ ଭୋଇଙ୍କ ପିତାଙ୍କ ନାମ ୰ ମୃତ୍ୟୁଞ୍ଜୟ ଭୋଇ ଓ ମାତାଙ୍କ ନାମ ୰ ଉର୍ବଶୀ ଭୋଇ । ସେ ଷଷ୍ଠ ଶ୍ରେଣୀ ପର୍ଯ୍ୟନ୍ତ ଅଧ୍ୟୟନ କରି କୌଳିକ ବ୍ୟବସାୟ କୃଷି କାର୍ଯ୍ୟରେ ଲିପ୍ତ ଅଛନ୍ତି । ୧୯୭୯ ଠାରୁ ସେ ଲେଖା ଆରମ୍ଭ କରିଛନ୍ତି ତାଙ୍କ ଦ୍ୱାରା ରଚିତ ଓ ପ୍ରକାଶିତ ଗ୍ରନ୍ଥ ଲୁଜୁବମୁଣ୍ଡା ଦଣ୍ଡର ମାଞ୍ଚ ଓ ହାନ୍ତି ଓ ଶ୍ରୀ ଚୁଡିଆ ଝିଟାଙ୍କ ଦିବ୍ୟ ଜୀବନ ଧାରା । ଏହି ଗ୍ରନ୍ଥ ୧୯୮୨ ରେ ପ୍ରକାଶିତ । ବ୍ରାହ୍ମଣ ଦେବୋ ବନ୍ଦନା ନାମକ ୪ର୍ଥ ପୁସ୍ତକର ଏକ ହାଣ୍ଡ ଲିପି ତାଙ୍କ ନିକଟରେ ରହିଛି । ଶ୍ରୀ ଭୋଇ ଟିକାବାଲିର ସ୍ଥାୟୀ ବାସିନ୍ଦା ।

* * *

## ଶ୍ରୀ ପତିତପାବନ ରାଉତ

କଟକ ଜିଲ୍ଲା କେନ୍ଦ୍ରାପଡା ଥାନା ପାଳସିଂହା ନିକଟସ୍ଥ ସାନମାଣ୍ଡିଆ ଗ୍ରାମରେ ତା ୫ । ୨ । ୧୯୫୫ ରେ ଜନ୍ମ । ପିତା ସାରଧର ରାଉତ ଓ ମାତା କେମାମଣି ରାଉତ । ଶିକ୍ଷାଗତ ଯୋଗ୍ୟତା ଆଇ. ଏ. । ୧୯୭୫ ରୁ ଲେଖା ଆରମ୍ଭ । ନାଟକ, ଗୀତି ନାଟ୍ୟ, ଉପନ୍ୟାସ, ଗଳ୍ପ; କବିତା ଓ ରମ୍ୟ ରଚନା

ସୃଷ୍ଟି କରନ୍ତି । କେତେକ କ୍ଷୁଦ୍ର ଗଳ୍ପ ବିଭିନ୍ନ ସମୟରେ କେତେକ ପତ୍ର ପତ୍ରିକାରେ ପ୍ରକାଶିତ । ବୃତ୍ରାସୁର ବଧ (ଗୀତି ନାଟ୍ୟ ଅଭିନୀତ ଓ ପ୍ରଶଂସିତ) ଶେଷ ରାତି, ଝିଅ ଫଗୁଣ ବଡ ଘରର ଜାନ୍ଧ ସେ ସବୁ କଥା ( ଉପନ୍ୟାସ ) ଲେଖା ଅପ୍ରକାଶିତ ଅବସ୍ଥାରେ ଅଛି । ମାସିକ ସାହିତ୍ୟ ପତ୍ରିକା ଝରଣାର ସହ ସଂପାଦକ । ଶ୍ରୀ ଶ୍ରୀ ରାମ ଦାସ ସାଂସ୍କୃତିକ ଯୁବ ପରିଷଦ ସହ ସଂପୃକ୍ତ । ବହୁ ନାଟକର ଅଭିନେତା ଓ ନାଟ୍ୟ ନିର୍ଦ୍ଦେଶକ । ଗତ ଦଶ ବର୍ଷରୁ ଉର୍ଦ୍ଧ୍ୱ ଫୁଲବାଣୀରେ ଅବସ୍ଥାନ । ବର୍ତ୍ତମାନ ଠିକଣା ପରୀକ୍ଷାଗାର ଯନ୍ତ୍ର ବିଦ୍ୟାବିତ୍, ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ର, ସା. ପୋ. ଦାରିଙ୍ଗବାଡ଼ି ଜି ଫୁଲବାଣୀ ।

— o —

## ଶ୍ରୀ ପଦ୍ମ ଚରଣ ନାୟକ

ତା ୧ । ୪ । ୧୯୪୭ ରେ ଫୁଲବାଣୀ ଜିଲ୍ଲା କ୍ଷୁଦ୍ର ସହର ଟିକାବାଲିରେ ଶ୍ରୀ ପଦ୍ମ ଚରଣ ନାୟକଙ୍କ ଜନ୍ମ । ପିତାଙ୍କ ନାମ ଲମ୍ବନାୟକ ଓ ମାତାଙ୍କ ନାମ ମଧୁରିକା ନାୟକ । ଶ୍ରୀ ନାୟକଙ୍କ ଶିକ୍ଷାଗତ ଯୋଗ୍ୟତା ମାଟ୍ରିକୁଲେସନ । ବର୍ତ୍ତମାନ ସେ ଟିକାବାଲିରେ ଅବସ୍ଥାନ କରୁଛନ୍ତି ଓ ଶିକ୍ଷା ବିଭାଗ ଅଧୀନରେ ଜଣେ ତୃତୀୟ ଶ୍ରେଣୀ କର୍ମଚାରୀ ଭାବେ କାର୍ଯ୍ୟ କରୁଛନ୍ତି । ଲେଖା ଆରମ୍ଭ କାଳ ପ୍ରାୟ ୧୯୬୦ ରୁ [ ଛାତ୍ରାବସ୍ଥାରୁ ] । କବିତା ଓ କ୍ଷୁଦ୍ର ଗଳ୍ପ ରଚନାରେ ସେ ସିଦ୍ଧହସ୍ତ । ତାଙ୍କର ଲେଖା କଳାହାଣ୍ଡି, ଦୈନିକ ସ୍ୱରାଜ୍ୟର କଟକ ର ସଂସାର ବିଭାଗରେ ଚକ୍ରୀ ପୃଷ୍ଠ, ଇନ୍ଦ୍ର, ବନମାଳା, ବାଣୀ ଓ ନିର୍ଝରରେ ବହୁବାର ପ୍ରକାଶିତ । ଶ୍ରୀ ନାୟକ ବିଭିନ୍ନ ସଂସ୍ଥା ଦ୍ୱାରା ଆୟୋଜିତ କବିତା ପାଠୋତ୍ସବରେ ଅଂଶ ଗ୍ରହଣ କରି ଆସୁଛନ୍ତି । ଫୁଲବାଣୀ ଲେଖକ ପରିଷଦର ସହ ସଂପାଦକ ଓ ଅରଣ୍ୟ ପତ୍ରିକାର ସହ ସଂପାଦକ କାର୍ଯ୍ୟ ମଧ୍ୟ ସେ ତୁଲାଇ ଆସୁଛନ୍ତି । ତାଙ୍କର ଏକ 'କବିତା ସଂକଳନ' ପ୍ରକାଶ ଅପେକ୍ଷାରେ ।

—o—

## ଶ୍ରୀ ପଦ୍ମନାଭ ସାହୁ

ଗଞ୍ଜାମ ଜିଲ୍ଲା ଭଞ୍ଜନଗର ଥାନ ମଶାବାଡ଼ ଗ୍ରାମରେ ତା ୧୪-୪-୧୯୨୪ ରେ ଶ୍ରୀ ସାହୁଙ୍କ ଜନ୍ମ। ପିତା ଉମ୍ବରୁ ସାହୁ ଓ ମାତା ସୁକୁମାରୀ ଦେବୀ। ପଞ୍ଚମ ଶ୍ରେଣୀ ପରେ ପରେ ସେ ଶିକ୍ଷା ତ୍ୟାଗ କରି ବ୍ୟବସାୟ ଆରମ୍ଭ କଲେ। ତାଙ୍କୁ ଯେତେବେଳେ ପ୍ରାୟ ୧୫ ବର୍ଷ ସେ ଲେଖା ଲେଖି ଦିଗକୁ ମନ ବଳାଇଲେ। ସାମାଜିକ, କାଳ୍ପନିକ ଓ ପୌରାଣିକ ନାଟକ ରଚନାରେ ସେ ପାରଙ୍ଗମ। ଗଞ୍ଜାମ ଜିଲ୍ଲାର ବହୁ ସ୍ଥାନରେ ବିଭିନ୍ନ ନାଟ୍ୟ ସଂସ୍ଥା ଦ୍ୱାରା ତାଙ୍କର ବହୁ ନାଟକ ମଞ୍ଚସ୍ଥ ହୋଇଥିଲେ ହେଁ ବହି ଆକାରରେ ପ୍ରକାଶ ପାଇ ପାରି ନାହିଁ। ତାଙ୍କର ରଚିତ ଓ ମଞ୍ଚସ୍ଥ ନାଟକ ଗୁଡ଼ିକ ହେଲା, ଭାଗ୍ୟଲକ୍ଷ୍ମୀ, ମୁକ୍ତ ଚକ୍ଷୁ, ପରୀକ୍ଷା, ପତିବ୍ରତା, ଭାଇ ଭଉଣୀ, ମାମୁଁ, ଦୈବୀ ଚକ୍ରାନ୍ତ ଇତ୍ୟାଦି। ସେ ବାରଙ୍ଗବାଡ଼ରେ ଅବସ୍ଥାନ କରୁଛନ୍ତି।

—o—

## ଶ୍ରୀ ପ୍ରଣବ କୁମାର ମଣ୍ଡଳ

ଶ୍ରୀ ମଣ୍ଡଳଙ୍କ ଜନ୍ମ ପଶ୍ଚିମବଙ୍ଗ ବର୍ଦ୍ଧମାନ ଜିଲ୍ଲା ସାରଙ୍ଗା ଗ୍ରାମରେ ତା ୨୩।୪।୧୯୫୦ ରେ। ପିତା ୰ ଅମଳେନ୍ଦୁ ମଣ୍ଡଳ ଓ ମାତା ୰ ଇନ୍ଦିରା ମଣ୍ଡଳ। ବି. ଏ. ପାସ୍ କଲା ପରେ ଓଡ଼ିଶା ସରକାରଙ୍କ ଅର୍ଥ ବିଭାଗ ଅଧୀନରେ ଜଣେ ତୃତୀୟ ଶ୍ରେଣୀ କର୍ମଚାରୀ ରୂପେ ଅବସ୍ଥାପିତ। ୧୯୬୭ ରୁ ଗଳ୍ପ କବିତା ଆଦି ଲେଖିବା ଆରମ୍ଭ କରିଥିଲେ। ତାଙ୍କର ଲେଖା କେତେକ ପତ୍ର ପତ୍ରିକାରେ ପ୍ରକାଶିତ। ସେ 'ଆଶା' ନାମକ ମିନି ସାହିତ୍ୟ ପତ୍ରିକାର ସଂପାଦକ ଥିଲେ। ଜିଲ୍ଲାର ବିଭିନ୍ନ ସାହିତ୍ୟ ଆସର ଓ

ସଂସ୍କୃତିକ କାର୍ଯ୍ୟକ୍ରମରେ ଶ୍ରୀ ମଣ୍ଡଳ ଯୋଗ ଦଅନ୍ତି । ମୋହନ ଦାସ କରମ ଚାନ୍ଦ ସଂସ୍କୃତିକ ପରିଷଦ ପାକ୍ଷିକ ବାର୍ତ୍ତାର ସେ ସଂପାଦକ ଥିଲେ । ୧୯୭୯ ମସିହା ଠାରୁ ଏ ଜିଲ୍ଲାରେ ରହି ଆସୁଛନ୍ତି । ଯୋଗାଯୋଗ ଠିକଣା ମାଷ୍ଟର ପଡ଼ା, ଫୁଲବାଣୀ ।



## ଶ୍ରୀ ପ୍ରକାଶ ଚନ୍ଦ୍ର ସାବତ

ଶ୍ରୀ ପ୍ରକାଶ ଚନ୍ଦ୍ର ସାବତଙ୍କ ଜନ୍ମ ମୟୂରଭଞ୍ଜର ନାରଦପୁରପାଟଣା ଗ୍ରାମରେ ତା ୫ । ୧ । ୧୯୫୦ ରେ । ପିତା ସ୍ୱ ବାଲୁଙ୍କି ସାବତ ଓ ମାତା ଶ୍ରୀମତୀ କଲ୍ୟାଣୀ ସାବତ । ଶିକ୍ଷାଗତ ଯୋଗ୍ୟତା ଏଚ୍ ଏମ୍. ଡ. ଇନ୍ ଡ୍ରେସ୍କିଂ, ଓସ ଇନ୍ ଫିଲ୍ମ୍ ମେକିଂ । ପେଷା ଚାକିରୀ । ଲେଖା ଆରମ୍ଭ କାଳ ୧୯୬୩ । କବିତା, ନାଟକ, ଉପନ୍ୟାସ ଓ ଗଳ୍ପ ଲେଖନ୍ତି । କୌଣସି ଲେଖା ପ୍ରକାଶିତ ହୋଇ ନ ଥିଲେ ମଧ୍ୟ ଲେଖା ଲେଖି ଅବ୍ୟାହତ ରଖିଛନ୍ତି । ତାଙ୍କର ପାଣ୍ଡୁଲିପି ଦେଲ, ବୈଶାଖୀ ବନ୍ୟା, ତରୁଣ ମନର ତଳେ, ଆଜି ବି; ନଷ୍ଟାପ ଦୃଷ୍ଟି, ପ୍ରତାରଣା; ମନ ମର୍ମର, ଧୂସର ବସନ୍ତ, ଜାଲିପ୍ୟାଡ୍, ମ୍ଳାନ ଚନ୍ଦ୍ରମା [ ନାଟକ ] ଲେଖା ଲେଖି ସଙ୍ଗେ ନାଟକ ଓ ସିନେମାରେ ଅଭିନୟ ତଥା ନିର୍ଦ୍ଦେଶନା ଦଅନ୍ତି । ୧୯୫୧ ଠାରୁ ସେ ଫୁଲବାଣୀ ଜିଲ୍ଲାର ବାଲିଗୁଡାରେ ରହି ଆସୁଛନ୍ତି । ସମ୍ପ୍ରତି ତାହାଙ୍କ ରଚିତ ପାଠଖଣ୍ଡ ଜଣାଣ ପ୍ରକାଶିତ ।

— ୦ —

## ଶ୍ରୀ ପ୍ରଦୀପ ନାୟକ

ତା ୧ । ୭ । ୧୯୫୪ ରେ ଜି. ଉଦୟଗିରିର ଶଙ୍ଖସାହିରେ ଜନ୍ମ । ପିତା ଲକ୍ଷ୍ମଣ ନାୟକ ଓ ମାତା ଶ୍ରୀମତୀ ବସନ୍ତ ନାୟକ । ଅଷ୍ଟମ ଶ୍ରେଣୀ ପାଶ୍ ପରେ ନିଜର ବୃଥ ଜମିର ରକ୍ଷଣାବେକ୍ଷଣ କରିବା ସଙ୍ଗେ ସଙ୍ଗେ ଅବସର ସମୟରେ ସାହିତ୍ୟ ଚର୍ଚ୍ଚା କରନ୍ତି । କବିତା ସଙ୍ଗୀତ ଓ ନାଟକ ରଚନାରେ ଖୁବ୍ ଆଗ୍ରହ । କେତେକ ଲେଖା ସ୍ଥାନୀୟ ସାହିତ୍ୟ ପତ୍ର ବାଣୀ ଓ ଅରଣ୍ୟରେ ପ୍ରକାଶିତ । ଲେଖକଙ୍କ ରଚିତ ନାଟକ ବେଦ ନିଷ୍ପତ୍ତି ପ୍ରକାଶ ଅପେକ୍ଷାରେ । ନାମ ସଂକୀର୍ତ୍ତନ ଭଳି ଧର୍ମ କାର୍ଯ୍ୟାନୁଷ୍ଠାନରେ ସକ୍ରିୟ ଅଂଶ ଗ୍ରହଣ କରି ସେ ଆନନ୍ଦ ଲଭ କରନ୍ତି । ବର୍ତ୍ତମାନ ସେ ତାଙ୍କର ଜି. ଉଦୟଗିରିର ଶଙ୍ଖ ସାହିସ୍ଥ ବାସ ଭବନରେ ଅବସ୍ଥାନ କରୁଛନ୍ତି ।



## ଶ୍ରୀ ପ୍ରମୋଦ କୁମାର ସାମନ୍ତରାୟ

ଗଞ୍ଜାମ ଜିଲ୍ଲା ହୋରଡା ଥାନା ଡୁକୁମା ଗ୍ରାମରେ ତା ୧-୬-୧୯୫୫ ରେ ଶ୍ରୀ ପ୍ରମୋଦ କୁମାର ସାମନ୍ତରାୟଙ୍କ ଜନ୍ମ ହୋଇଥିଲେ ମଧ୍ୟ ସଂପ୍ରତି ସେ ଟିକାବାଲିର ସ୍ଥାୟୀ ବାସିନ୍ଦା ରୂପେ ପରିଗଣିତ । ଶ୍ରୀ ସାମନ୍ତରାୟଙ୍କ ପିତା ମିନକେତନ ସାମନ୍ତରାୟ ଓ ମାତା ନଶାମଣି ସାମନ୍ତରାୟ । ସେ ଫାର୍ମାସିରେ ଡିପ୍ଲୋମା ଲାଭ କରିଛନ୍ତି । ଏହି ଯୁବ ଲେଖକ ଏକାଧାରରେ ଏକାଙ୍କିକା, କ୍ଷୁଦ୍ର ଗଳ୍ପ ଓ କବିତା ରଚନା କରିବାରେ ସମର୍ଥ । ଲେଖକଙ୍କର ଲେଖା ପଲ୍ଲୀ ବନ୍ଧୁ, କଳ୍ପର ଇତ୍ୟାଦି ସାହିତ୍ୟ ପତ୍ରିକାରେ ପ୍ରକାଶିତ । ତାଙ୍କର ଅପ୍ରକାଶିତ ଏକାଙ୍କିକା 'ସୁଅ ମୁହଁର ପରେ' ପ୍ରକାଶ ଅପେକ୍ଷାରେ ।

ଲେଟା ଲେଖି ସଙ୍ଗେ ସଙ୍ଗେ ଶ୍ରୀ ସାମନ୍ତରାୟ ବିଭିନ୍ନ ପାଠକରେ ଉଦ୍ଭବ କରିଛନ୍ତି ଓ ନିର୍ଦ୍ଦେଶନା ପଥ ଦେଉଛନ୍ତି ।

— ୦ —

## ଶ୍ରୀ ପ୍ରସନ୍ନ କୁମାର ପଟ୍ଟନାୟକ

ଶ୍ରୀ ପ୍ରସନ୍ନ କୁମାର ପଟ୍ଟନାୟକଙ୍କ ଜନ୍ମ ସ୍ଥାନ କୋରାପୁଟ ଜିଲ୍ଲା ଦୁରୁଟେଡ଼ା ଗ୍ରାମରେ ତା ୧୫ । ୭ । ୧୯୫୪ ରେ । ତାଙ୍କ ପିତାଙ୍କ ନାମ ଭଗବାନ ପଟ୍ଟନାୟକ ଓ ମାତାଙ୍କ ନାମ ଯଶୋଦା ପଟ୍ଟନାୟକ । ଶ୍ରୀ ପଟ୍ଟନାୟକ ବି. ଏ. ପାଶ୍ କରିବାରେ ରାଜସ୍ୱ ବିଭାଗ ଅଧୀନରେ କାର୍ଯ୍ୟ କରୁଛନ୍ତି ଓ ସମ୍ପ୍ରତି ସେ ଫୁଲବାଣୀ ଜିଲ୍ଲା ଜି. ଉଦୟଗିରି ତହସିଲରେ ଅବସ୍ଥାପିତ ହୋଇଛନ୍ତି । ୧୯୭୮ ଠାରୁ ସେ ଏହି ଫୁଲବାଣୀ ଜିଲ୍ଲାରେ ରହି ଆସୁଛନ୍ତି ଓ ସେବେ ଠାରୁ ଲେଟା ଲେଖିରେ ମନୋନିବେଶ କରିଛନ୍ତି । ତାଙ୍କର ଗଳ୍ପ କବିତା ବିଭିନ୍ନ ସମ୍ବାଦରେ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ । ବର୍ତ୍ତମାନ ଶ୍ରୀ ପଟ୍ଟନାୟକଙ୍କ ନିକଟରେ ଥିବା ତାଙ୍କର ରଚିତ ପାଣ୍ଡୁଲିପି ଗୁଡ଼ିକ ଆସନ୍ତା ପ୍ରକାଶର କଥା [ଗଳ୍ପ ସଂକଳନ] 'ବର୍ଣ୍ଣ ଝଡ଼' ଓ ସ୍ୱପ୍ନ ଛବି [କବିତା ସଂକଳନ] ।

— ୦ —

## ଶ୍ରୀ ପୁରୁଷୋତ୍ତମ ସାହୁ

ଏହି ଉଦୀୟମାନ ଲେଖକଙ୍କର ଜନ୍ମ ଫୁଲବାଣୀ ଜିଲ୍ଲା ବାମୁଣିଗାଁ ଥାନା ନିକଟସ୍ଥ ବନବନାନୀ ପରିବେଷ୍ଟିତ ଆଦିବାସୀ ବହୁଳ କ୍ଷୁଦ୍ର ପଲ୍ଲୀ ସିକରମାହା ଗ୍ରାମରେ ତା ୨୪ । ୫ । ୧୯୬୧ ରେ । ପିତା ରଘୁନାଥ ସାହୁ ଓ

ମାତା ଶ୍ରୀମତୀ କୁନ୍ତଳା ସାହୁ । ଶିକ୍ଷାଗତ ଯୋଗ୍ୟତା ନବମ ଶ୍ରେଣୀ । ୧୯୮୪ ରୁ ଲେଖା ପ୍ରତି ମନ ବଳାଇଛନ୍ତି । ଗଳ୍ପ, କବିତା ଓ ଉପନ୍ୟାସ ଲେଖନ୍ତି । କୌଣସି ଲେଖା ପ୍ରକାଶ ପାଇବାର ସୁଯୋଗ ସୃଷ୍ଟି ହୋଇନାହିଁ । ତାଙ୍କ ନିକଟରେ ଥିବା ପାଣ୍ଡୁଲିପି ଗୁଡ଼ିକ ହେଲା ୧ ସୀମନ୍ତ ସିନ୍ଦୁର ୨- ଦୁଇ ଟୋପା ଲୁହ [ଉପନ୍ୟାସ] ଧ୍ୟାନମଗ୍ନ ଉମା ଓ ଆନ୍ତୁଳା ସ୍ୱପ୍ନ [ଗଳ୍ପ] ଏକ କବିତା ସଂକଳନ । ନାଟକରେ ଅଭିନୟ କରନ୍ତି । ବର୍ତ୍ତମାନ ଠିକଣା; ମାର୍ଫତ ଗୋଷ୍ଠି ଜନାର୍ଦ୍ଦନ ଦେଓ ରାସ୍ତା, ପୋ. ପୋ. ଡାଇଙ୍ଗବାଡ଼ି, ଜିଲ୍ଲା ଫୁଲବାଣୀ ।

●

## କବିରାଜ ବାଞ୍ଛାନିଧି ସାହୁ

ଗଞ୍ଜାମ ଜିଲ୍ଲା ପୋଲସରା ଗ୍ରାମରେ ୧୯୩୦ ମସିହାରେ ଜନ୍ମ । ପିତା ସ୍ୱ କୈବଲ୍ୟ ସାହୁ ଓ ମାତା ସ୍ୱ ଦେବକୀ ସାହୁଙ୍କ ଔରସରୁ ବାଞ୍ଛାନିଧି ସାହୁଙ୍କ ଜନ୍ମ । ଶ୍ରୀ ସାହୁ ଓଡ଼ିଶା ସରକାରଙ୍କ ଆଦିବାସୀ ଗ୍ରାମ ମଙ୍ଗଳ ବିଭାଗ ଅଧୀନସ୍ଥ ସେବାଶ୍ରମରେ ଶିକ୍ଷକତା କରୁଥିଲେ ଓ ୧୯୬୧ ମସିହାରେ ସ୍ୱେଚ୍ଛାକୃତ ଭାବେ ଶିକ୍ଷକ ବୃତ୍ତିରୁ ଇସ୍ତଫା ଦେଇ ଔଷଧ ବ୍ୟବସାୟରେ ମନୋନିବେଶ କଲେ । ବର୍ତ୍ତମାନ ଶ୍ରୀ ସାହୁଙ୍କର ଏକ ଔଷଧ ଦୋକାନ ଜି. ଉଦୟଗିରି ଠାରେ ରହିଛି ଓ ଶ୍ରୀ ସାହୁ ସେଠାରେ ବସବାସ କରୁଛନ୍ତି । ଔଷଧ ବ୍ୟବସାୟ ସଙ୍ଗେ ସଙ୍ଗେ ଶ୍ରୀ ସାହୁ କବିତା, ଗୀତ ଓ ଚିକିତ୍ସା ସମ୍ପର୍କୀୟ ପୁସ୍ତକ ରଚନା ଓ ପ୍ରକାଶ କରିଛନ୍ତି । ତାଙ୍କର ପ୍ରକାଶିତ ପୁସ୍ତକ ମଧ୍ୟରେ ଗାର୍ହସ୍ଥ୍ୟ ପ୍ରବାଦ ସଂଗ୍ରହ ମଞ୍ଜୁଷା ୨- ଦର୍ଶନ ମଞ୍ଜୁଷା ୩- ଆଶୁ ଫଳପ୍ରଦ ଚିକିତ୍ସା ମଞ୍ଜୁଷା ୪- କୈବଲ୍ୟ କଣାଣ ୫- ପ୍ରାକୃତିକ ଚିକିତ୍ସା ମଞ୍ଜୁଷା ୬- ସରଳ ଶିଶୁ ଚିକିତ୍ସା ୭- ଦୁର୍ଗା ସ୍ତୁତି ଆଧୁନିକ କବିତା ୮- ଜାତି ରହସ୍ୟ ୯- ପିଲାଙ୍କ ସନ୍ଦେଶ ମାଳ ଉଲ୍ଲେଖ ଯୋଗ୍ୟ ।

—○—

## ଶ୍ରୀ ବାସୁଦେବ ମିଶ୍ର

କଟକ ଜିଲ୍ଲା ବୈତରଣୀ ରୋଡ ନିକଟସ୍ଥ ମୁକୁନ୍ଦପୁର ଗ୍ରାମରେ ତା ୪।୧୦।୧୯୪୭ ରେ ଜନ୍ମ। ପିତା ଶ୍ରୀ କେଦାରନାଥ ମିଶ୍ର ଓ ମାତା ଶ୍ରୀମତୀ କାଦମ୍ବିନୀ ଦେବୀ। ଶିକ୍ଷାଗତ ଯୋଗ୍ୟତା ଆଚାର୍ଯ୍ୟ ଏମ୍. ଏ.। ବର୍ତ୍ତମାନ ଜି. ଉଦୟଗିରିରେ ଶିକ୍ଷକତା କରନ୍ତି। ଛାତ୍ରାବସ୍ଥାରୁ ଲେଖା ଆରମ୍ଭ। ଏକାଧାରରେ ଇଂରେଜୀ ଓ ଓଡ଼ିଆରେ କବିତା, ଗଳ୍ପ ପ୍ରବନ୍ଧ ଓ ରମ୍ୟ ରଚନା ଲେଖନ୍ତି। ବହୁ ଲେଖା ଝଙ୍କାର, ବାଣୀ ଇତ୍ୟାଦିରେ ପ୍ରକାଶିତ। ମିଶ୍ରଙ୍କର ଏକ ଇଂରେଜୀ କବିତା ପୁସ୍ତକ 'ଏ ହାଣ୍ଡ୍ ଫୁଲ୍ ଅଫ୍ ଡ୍ରିମ୍ସ୍' ୧୯୮୭ ରେ ଶ୍ରୀମତୀ ବାସନ୍ତୀ ମିଶ୍ରଙ୍କ ଦ୍ୱାରା ପ୍ରକାଶିତ। ଏକ ଓଡ଼ିଆ କବିତା ସଂକଳନ ପ୍ରକାଶ ଅପେକ୍ଷାରେ। ମାସିକ ସାହିତ୍ୟ ପତ୍ରିକା ବାଣୀର ସଂପାଦନା ସହିତ ଓଡ଼ିଶାର ଅନେକ ସାଂସ୍କୃତିକ ସଂଗଠନ ସହ ସେ ଜଡ଼ିତ। ୧୯୭୮ ମସିହାରୁ ଫୁଲବାଣୀ ଜିଲ୍ଲାରେ କାର୍ଯ୍ୟରତ। ଶ୍ରୀ ବାସୁଦେବ ମିଶ୍ରଙ୍କ ବର୍ତ୍ତମାନ ଠିକଣା, ଗୋଲପାଡ଼ା, ପୋ. ଜି. ଉଦୟଗିରି ଜି. ଫୁଲବାଣୀ।

—o—

## ଶ୍ରୀ ବିଜୟ କୁମାର ପାତ୍ର

ତା ୧।୭।୧୯୪୧ ରେ ଫୁଲବାଣୀ ଜିଲ୍ଲା ବ୍ରାହ୍ମଣପାଡ଼ ଗ୍ରାମରେ ଜନ୍ମ। ପିତା ୰ ଆନନ୍ଦ ପାତ୍ର ଓ ମାତା ୰ ରମା ଦେବୀ। ସପ୍ତମ ଶ୍ରେଣୀ ପାସ୍ ପରେ ଶିକ୍ଷକତା କରନ୍ତି। ୧୯୬୭ ରୁ ନାଟକ, ଭଜନ ଓ କବିତା ଆଦି ଲେଖୁଛନ୍ତି। ତାଙ୍କର ନାଟକ ପାଣ୍ଡୁଲିପି ଛଦ୍ମବେଶୀ, କେଉଁ କିଏ ପ୍ରକାଶ ଅପେକ୍ଷାରେ। ସେ ଅଭିନୟ କରିବା ସଙ୍ଗେ ସଙ୍ଗେ ଗୀତ ମଧ୍ୟ ଗାଇ ପାରନ୍ତି। ବର୍ତ୍ତମାନ ଠିକଣା; ପ୍ରଧାନ ଶିକ୍ଷକ, ଶଙ୍ଖବାଡ଼ି ଉ. ପ୍ରା. ବିଦ୍ୟାଳୟ।



## ଡକ୍ଟର ଶଶେଭୂଷଣ ନନ୍ଦ ପାଣିଗ୍ରାହୀ

ତା ୨୬ । ୭ । ୧୯୪୫ ରେ ଗଞ୍ଜାମ ଜିଲ୍ଲା ଚିକିଟି ଗ୍ରାମରେ ଜନ୍ମ । ପିତାଙ୍କ ନାମ ୰ ନବିନ ନାଥ ପାଣିଗ୍ରାହୀ ଓ ମାତାଙ୍କ ନାମ ଶ୍ରୀମତୀ ଅନ୍ନପୂର୍ଣ୍ଣା ପାଣିଗ୍ରାହୀ । ଶିକ୍ଷାଗତ ଯୋଗ୍ୟତା ଏମ୍. ଏ. ପି. ଏଚ୍. ଡ଼. [ ବ୍ରହ୍ମପୁର ବିଶ୍ୱ ବିଦ୍ୟାଳୟ ] । ୧୯୬୨ ରୁ ଲେଖା ଲେଖି ଆରମ୍ଭ କରନ୍ତି ଓ କବିତା, ଗଳ୍ପ, ଗବେଷଣା ଧର୍ମୀ ପ୍ରବନ୍ଧ ଜ୍ୟୋତିଷ ବିଜ୍ଞାନ ସମ୍ପର୍କରେ ପ୍ରବନ୍ଧ ରଚନା କରନ୍ତି । ବ୍ରହ୍ମପୁରର ପୁସ୍ତକ ଭଣ୍ଡାର ଦ୍ୱାରା ତାଙ୍କର ' ମହାନ୍ ବିପ୍ଳବୀ ଚନ୍ଦ୍ର ବନ୍ଦୋପୃ' ନାମକ ପୁସ୍ତକ ପ୍ରକାଶିତ । ତାଙ୍କ ନିକଟରେ ଥିବା ପାଣ୍ଡୁଲିପି ଗୁଡ଼ିକ ହେଲା ପ୍ରିୟତମା ଲକାତ [କବିତା] ବିଚ୍ଛିନ୍ନ ଆକାଶ [କବିତା] ଅନେକ ସୂର୍ଯ୍ୟାସ୍ତ [ଗଳ୍ପ] ମୃତ୍ୟୁ ଓ ସମାଲୋଚନା [ସମାଲୋଚନା] ସାହିତ୍ୟ ସଂପର୍କରେ [ସ] ଗୋଦାବରୀଶ ମହାପାତ୍ରଙ୍କ ଗଳ୍ପ କଳା । ସେ ସାହିତ୍ୟ ପତ୍ର ଅଂଶୁମାନ, ମରଣୀ ଓ ନିର୍ଝର ସଂପାଦନା କରୁଥିଲେ । ଉତ୍କଳ ଜ୍ୟୋତିଷ ଗବେଷଣା ପରିଷଦ ଦ୍ୱାରା ଜ୍ୟୋତିଷ ଗବେଷକ ଭାବେ ନିରୀତ୍ୟ ପଦକ ପ୍ରାପ୍ତ ଭଞ୍ଜ ସାହିତ୍ୟ ପରିଷଦ ତରଫରୁ ସମ୍ବର୍ଦ୍ଧିତ । ଉତ୍କଳବାଣୀ ଲେଖକ ପରିଷଦର ପ୍ରତିଷ୍ଠାତା ସଭାପତି । ୧୯୮୦ ରୁ ସେ ଜି. ଜଗତସିଂହପୁରରେ ଅବସ୍ଥାନ କରୁଛନ୍ତି ଓ କଳିଙ୍ଗ ମହାବିଦ୍ୟାଳୟରେ ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗର ମୁଖ୍ୟ ଅଧ୍ୟାପକ ଭାବେ କାର୍ଯ୍ୟ ସମ୍ପାଦନ କରୁଛନ୍ତି ।

—୦—

## ଶ୍ରୀ ବୀରେନ୍ଦ୍ର କୁମାର ଭୂୟାଁ

ଶ୍ରୀ ଭୂୟାଁ ୧୯୩୩ ମସିହାରେ କଟକ ଜିଲ୍ଲା, ଗୋବିନ୍ଦପୁର ନିକଟସ୍ଥ ଜଳାପଡ଼ା ନାମକ ମଫସଲ ଗ୍ରାମରେ ଜନ୍ମ । ପିତା ୰ ବଳରାମ ଭୂୟାଁ ଓ ମାତା ୰ ସୁଲୋଚନା ଦେବୀ । ବି. ଏ. ପାସ୍ କଲାପରେ ସରକାରୀ ଚାକିରୀରେ ଯୋଗଦାନ

ଓ ବର୍ତ୍ତମାନ କୋଟଗଡ଼ ବ୍ଲକର ଗୋଷ୍ଠି ଉନ୍ନୟନ ଅଧିକାରୀ ଭାବେ ଅବସ୍ଥାପିତ । ୧୯୪୯ ଛାତ୍ରାବସ୍ଥାରୁ ଲେଖା ଆରମ୍ଭ କରନ୍ତି । ଏକାଧାରରେ ସେ; ଗୀତି କବିତା, କବିତା, ଗଳ୍ପ, ଶିଶୁ କବିତା, ଶିଶୁ ପଦଲିଖି ଗଳ୍ପ ଓ ପ୍ରବନ୍ଧ ଆଦି ରଚନା କରିବାରେ ସିଦ୍ଧହସ୍ତ । ତାଙ୍କର ପ୍ରକାଶିତ ପୁସ୍ତକ ହେଲା ଲୁନୁମୁନୁ ଶିଶୁ କବିତା ୧୯୫୨ ପ୍ରକାଶିତ, ବଗ ବାଗୁଲି ୧୯୫୩, ଦୁଇଦି ଜୀବନ ୧୯୫୫ [କ୍ଷୁଦ୍ର ଗଳ୍ପ] ସୁନା ସଂସାର; ୧୯୮୭ ପ୍ରୌଢ଼ ଶିକ୍ଷା ପାଇଁ ଗଡ଼ିଆ ଗଙ୍ଗା ୧୯୮୬, ବନ ଜୀବନ ୧୯୮୭, ଗୋବର ଧନ ୧୯୮୭, ଲକ୍ଷ୍ମୀ ନନ୍ଦନ ୧୯୮୭ । ଅପ୍ରକାଶିତ ଦୁଇ ହଜାର ଗୀତି କବିତା ଓ ଅନ୍ୟାନ୍ୟ । ତାଙ୍କର ଲକ୍ଷ୍ମୀ ନନ୍ଦନ ଓ ଗଡ଼ିଆ ଗଙ୍ଗା ପାଇଁ ୧୯୮୫-୮୬ ରେ ସେ ଭାରତ ସରକାରଙ୍କ ପ୍ରୌଢ଼ ଶିକ୍ଷା ନିର୍ଦ୍ଦେଶାଳୟ ଦ୍ୱାରା ରାଷ୍ଟ୍ରୀୟ ପୁରସ୍କାର ପ୍ରାପ୍ତ । ୧୯୮୯ ବର୍ଷର ଉତ୍ସବରେ ପ୍ରଜାତନ୍ତ୍ର ପ୍ରଚାର ସମିତି ଦ୍ୱାରା ମୀନାବଜାର ପୁରସ୍କାର ପ୍ରାପ୍ତ ।

—○—

## ଶ୍ରୀ ବୈରାଗୀ କହଁର

ଗ୍ରାମ ଉପରଖୋଲ, ପୋ. ମୁସ୍କୁପାଲି, ଥାନା. ଟିକାବାଲି, ଜିଲ୍ଲା ଫୁଲବାଣୀରେ ଶ୍ରୀ ବୈରାଗୀ କହଁରଙ୍କର ତା ୧ । ୮ । ୧୯୬୨ ରେ ଜନ୍ମ । ତାଙ୍କର ପିତାଙ୍କ ନାମ ୰ ଅନନ୍ତ କହଁର ଓ ମାତାଙ୍କ ନାମ ଝଲି କହଁର । ଶ୍ରୀ କହଁରଙ୍କ ଶିକ୍ଷାଗତ ଯୋଗ୍ୟତା ଏମ୍. ଏସ୍ ସି. ( କେମେଷ୍ଟ୍ରି ) । ବର୍ତ୍ତମାନ ସେ ଝାରସୁଗୁଡ଼ାସ୍ଥ ପଞ୍ଜାବ ନ୍ୟାସନାଲ୍ ବ୍ୟାଙ୍କରେ ଚାକିରି କରୁଛନ୍ତି । ତାଙ୍କର 'ଓଡ଼ିଶା ସୂଚନା' ନାମକ ତଥ୍ୟ ମୂଳକ ପୁସ୍ତକ ୧୯୮୨ ରେ ପ୍ରକାଶିତ ।

×●×

## ଶ୍ରୀ ଭୁବନେଶ୍ବର ମଲିକ

ଶ୍ରୀ ମଲିକଙ୍କ ଜନ୍ମ ଫୁଲବାଣୀ ଜିଲ୍ଲା ଟିକାବାଲି ନିକଟସ୍ଥ କଣ୍ଟିକୁଦ୍ରୁମ ଗ୍ରାମରେ । ନିମ୍ନ ପ୍ରାଥମିକ ଗ୍ରାମ୍ କଳପରେ ଦରୋଇ କାର୍ଯ୍ୟ ସଂପାଦନ କରୁଛନ୍ତି । ବିଶେଷ କରି ଭଜନ ରଚନା କରିଥାଆନ୍ତି । ୧୯୮୫-୮୭ ରେ ତାଙ୍କର ପୁସ୍ତିକା ହିନ୍ଦୁ ରହାସ୍ଯ ମନୋରଞ୍ଜନ ମଲିକଙ୍କ ଦ୍ୱାରା ପ୍ରକାଶିତ । ପୂର୍ବପୁରୁଷାନୁକ୍ରମେ ସେ ଏହି ଜିଲ୍ଲାରେ ବାସ କରି ଆସୁଛନ୍ତି ।

* * *

## ଶ୍ରୀ ରବୀନ୍ଦ୍ରନାଥ ଦାସ

ଶ୍ରୀ ଦାସଙ୍କ ଜନ୍ମ ସ୍ଥାନ କଟକ ଜିଲ୍ଲା ମାହାଙ୍ଗା ନିକଟସ୍ଥ ବୃନ୍ଦୁକୁନିଆ ଗ୍ରାମରେ ତା ୧୭ । ୮ । ୧୯୫୭ ରେ । ପିତାଙ୍କ ନାମ ଶ୍ରୀ ନନ୍ଦକିଶୋର ଦାସ । ବି. କମ୍. ପାସ କଲାପରେ ଚାକିରି କରନ୍ତି ଓ ବର୍ତ୍ତମାନ ଫୁଲବାଣୀ ଜିଲ୍ଲା ଇନ୍ଦ୍ରଗଡ଼ ଠାରେ ବି. ଅ. ଗ୍ରାମ୍ୟ ବ୍ୟାଙ୍କର ଶାଖା ପରିଚାଳକ ଦାୟିତ୍ୱରେ ଅଛନ୍ତି । ୧୯୭୮ ରୁ ଲେଖା ପ୍ରତି ମନ ବଳାନ୍ତି ଓ ଗୀତ କବିତା, କ୍ଷୁଦ୍ର ଗଳ୍ପ, ଓ ଆଧୁନିକ କବିତା ରଚନା କରନ୍ତି । ତାଙ୍କର କ୍ଷୁଦ୍ର ଗଳ୍ପ ସଂକଳନ ପ୍ରକାଶ ଅପେକ୍ଷାରେ ।

—୦—

## ଶ୍ରୀ ରାମଚନ୍ଦ୍ର ଦଗାଲ

ଶ୍ରୀ ଦଗାଲଙ୍କ ଜନ୍ମ ଫୁଲବାଣୀ ଜିଲ୍ଲା ଧି. ଉଦୟଗିରି ଥାନା ରୁଦାଙ୍ଗିଆ ଗ୍ରାମରେ । ଶିକ୍ଷାଗତ ଯୋଗ୍ୟତା ଅଷ୍ଟମ ଶ୍ରେଣୀ । ବ୍ୟବସାୟ ସମାଜ ସେବା । ସେ କୁଇ ଭାଷାରେ ସାର୍ଥକ କବିତା ସୃଷ୍ଟି କରି ପାରନ୍ତି । ଫୁଲବାଣୀ ନିପୀଡ଼ିତ ସଂସ୍ଥା ପକ୍ଷରୁ ଜୀବନ ସଙ୍ଗୀତ ( ମୁଦ୍ରିତ ସଂକଳନ ) ପ୍ରକାଶିତ । ଦୀର୍ଘ ୨୭ ବର୍ଷ ହେବ ସେ ଏହି ଜିଲ୍ଲାରେ ରହି ଆସୁଛନ୍ତି ।



## ଶ୍ରୀ ଲଡୁକେଶ୍ୱର ବେହେରା

ତା ୧।୪।୧୯୫୫ ରେ ସୋରଡ଼ା ଥାନା ଅସୁରବନ୍ଧ ଗ୍ରାମରେ ଜନ୍ମ । ପିତାଙ୍କ ନାମ ଶ୍ରୀ ହରି ପ୍ରସାଦ ବେହେରା ଓ ମାତା ଶ୍ରୀମତୀ ଚିନ୍ତାମଣି ବେହେରା । ଶିକ୍ଷାଗତ ଯୋଗ୍ୟତା ବି. ଏସ୍. ସି. ବି. ଇଡ୍. । ରଣବା ଅପଗ୍ରେଡେଡ୍ ମି. ଇ. ସ୍କୁଲରେ ପ୍ରଧାନ ଶିକ୍ଷକ ଭାବେ ଅବସ୍ଥାପିତ । ୧୯୭୧ ମସିହାରୁ ଲେଖା ଆରମ୍ଭ କରନ୍ତି । ନାଟକ, କବିତା, ଗଳ୍ପ, ପ୍ରବନ୍ଧ ରଚନା କରି ପାରନ୍ତି । ତାଙ୍କର ଏକାଧିକ ଲେଖା ସାହିତ୍ୟ ପତ୍ରିକା ସୃଜନିକା, ଶିକ୍ଷଣିକା, ପଲ୍ଲୀ ବନ୍ଧୁ, ପ୍ରଭୃତିରେ ପ୍ରକାଶିତ । ଏହି ଲେଖକଙ୍କ ପାଣ୍ଡୁଲିପି ଗୁଡ଼ିକ ହେଲା; ହେତ ମାର ମୁକ୍ତି. ( ନାଟକ ) ୨· ଅନେକ ଆଧୁନିକ କବିତା ଓ ଗଳ୍ପ । କଲେଜରେ ଅଧ୍ୟୟନ କରୁଥିବା ସମୟରେ ହିଞ୍ଜିଳିକାଟୁ କଲେଜରେ ଅଭିନୟ ପାଇଁ ପୁରସ୍କୃତ ଏବଂ ପ୍ରଶିକ୍ଷଣ ମହାବିଦ୍ୟାଳୟ ବ୍ରହ୍ମପୁରରେ ଗୀତିନାଟ୍ୟରେ ଅଭିନୟ କରି ପୁରସ୍କୃତ ।



## ଶ୍ରୀ ଶଶିଭୂଷଣ ରଥ

ତା ୭।୩।୧୯୪୭ ରେ ତାଙ୍କର ଜନ୍ମ । ପିତା ୰ ବୃନ୍ଦାବନ ରଥ ଓ ମାତା ପଦ୍ମମାଳୀ ରଥ । ପୁରୀ ଜିଲ୍ଲା ବୋଲଗଡ଼ ଥାନା ସଂପୁର ଗ୍ରାମରେ ସେ ଜନ୍ମ ଗ୍ରହଣ କରିଥିଲେ ମଧ୍ୟ ବି. ଏ. ବି. ଇଡ୍. ପରେ ୧୯୬୯ ମସିହାରୁ ଫୁଲବାଣୀ ଜିଲ୍ଲାରେ ନିଜର କର୍ମମୟ ଜୀବନ ଆରମ୍ଭ କରିଛନ୍ତି । ବର୍ତ୍ତମାନ ବ୍ରାହ୍ମଣୀପାଳ ଗ୍ରାମସ୍ଥ ବିଦ୍ୟାପୀଠ ଉଚ୍ଚ ବିଦ୍ୟାଳୟରେ ସରକାରୀ ଶିକ୍ଷକ ଭାବେ ଅବସ୍ଥାପିତ । କବିତା ଲେଖିବାରେ ବିଶେଷ ଆଗ୍ରହୀ । 'ତାଙ୍କର ଅନେକ କବିତା' ଶୀର୍ଷକ କବିତା ସଂକଳନ ପ୍ରକାଶ ଅପେକ୍ଷାରେ ।

—୦—

## ଶ୍ରୀ ଶିଶିର ପଟ୍ଟନାୟକ

ଗଞ୍ଜାମ ଜିଲ୍ଲା କେ. ନୂଆଗଡ ନିକଟସ୍ଥ ଖୁଣ୍ଟିଆ ଗ୍ରାମରେ । ତା ୭ - ୫ - ୧୯୫୯ ରେ ଶ୍ରୀ ଶିଶିର ପଟ୍ଟନାୟକଙ୍କର ଜନ୍ମ । ପିତା ବିଶ୍ୱନାଥ ପଟ୍ଟନାୟକ ଓ ମାତା ଭାଗ୍ୟଲତା ପଟ୍ଟନାୟକ । ମାଟ୍ରିକ ପାଶ କଲାପରେ ବ୍ରହ୍ମପୁରରେ ରହି ପୁସ୍ତକ ବ୍ୟବସାୟ ଓ ସାମ୍ବାଦିକତା କରୁଛନ୍ତି । ୧୯୭୫ ରୁ ଗଠନ ମୂଳକ ଓ ସମାଲୋଚନା ମୂଳକ ଗଳ୍ପ କବିତା ଲେଖି ଆସୁଛନ୍ତି । ତାଙ୍କର ଅନେକ ଲେଖା ବିଭିନ୍ନ ଓଡ଼ିଆ ପତ୍ର ପତ୍ରିକାରେ ବିଭିନ୍ନ ସମୟରେ ପ୍ରକାଶ ପାଇଛି । ଶ୍ରୀ ପଟ୍ଟନାୟକ ଜଣେ ମଞ୍ଚ ନିର୍ଦ୍ଦେଶକ ଓ ଅଭିନେତା ମଧ୍ୟ ।



## ଶ୍ରୀ ସୁଦର୍ଶନ ଆଚାର୍ଯ୍ୟ

ଜନ୍ମ ୨୮ । ୧୦ । ୧୯୩୩ ରେ ଗଞ୍ଜାମ ଜିଲ୍ଲା ବଡ଼କୋଦଣ୍ଡା ଗ୍ରାମରେ ପିତା ୰ ଦିଗାମ୍ବର ଆଚାର୍ଯ୍ୟ ଓ ମାତା ୰ ବୃନ୍ଦାମଣି ଆଚାର୍ଯ୍ୟ । ବର୍ତ୍ତମାନ ଫୁଲବାଣୀ ଜିଲ୍ଲା ଉଦୟଗିରି ଠାରେ ଆୟୁର୍ବେଦିକ ଚିକିତ୍ସକ ରୂପେ ଅବସ୍ଥାପିତ । କେବଳ କବିତା ରଚନାରେ ମନ ଦେଇଛନ୍ତି । ଅନେକ କବିତା ପୁସ୍ତ ସଦାଶିବ ସଂସ୍କୃତ ମହାବିଦ୍ୟାଳୟ ମୁଖପତ୍ର ପୂର୍ଣ୍ଣବାସିରେ ପ୍ରକାଶିତ । ଅପ୍ରକାଶିତ ଲେଖା ସମୂହ ୧- ନମାଧିର ଧ୍ୱନି, ୨- ଅସ୍ମିର ବିଳାପ, ୩ ଢ଼କାଘା, ୪- କୋଣାର୍କ । ୧୯୮୧ ମସିହାରୁ ଫୁଲବାଣୀ ଜିଲ୍ଲାରେ ବସବାସ କରୁଛନ୍ତି ।



## ଶ୍ରୀ ସୂର୍ଯ୍ୟ ନାରାୟଣ ଆଚାର୍ଯ୍ୟ

ସୂର୍ଯ୍ୟନାରାୟଣଙ୍କ ପିତା ଶ୍ରୀ ମଦନ ମୋହନ ଆଚାର୍ଯ୍ୟ ଓ ମାତା ଶ୍ରୀମତୀ ପାଟରାଣୀ ଆଚାର୍ଯ୍ୟ । ଜନ୍ମ ତା ୩ । ୭ । ୧୯୬୩ ରେ ଫୁଲବାଣୀ ଜିଲ୍ଲା ଜି.

ଉଦୟପୁରିଶରେ । ଶିକ୍ଷାଗତ ଯୋଗ୍ୟତା ବି. ଏ.(ସି. ଟି.) । ୧୯୭୯ରୁ କବିତା ଓ ରମ୍ୟ ରଚନା ଲେଖିଛନ୍ତି । ବର୍ତ୍ତମାନ ଠିକଣା - ପା/ପୋ : ଜ. ଉଦୟପୁରିର, ଜି - ଫୁଲବାଣୀ ।



## ଶ୍ରୀ ହରିହର ସାହୁ

ତାଂ ୨୦ । ୧୧ । ୧୯୪୩ ରେ କଟକ ଜିଲ୍ଲା କୃଷ୍ଣପଲ୍ଲୀ ପାଟଣା ଗ୍ରାମରେ ଶ୍ରୀ ସାହୁଙ୍କ ଜନ୍ମ । ପିତା କ୍ଷେତ୍ରବାସୀ ସାହୁ ଓ ମାତା ଉଦ୍‌ଭାର ଦେଇ । ବି. ଏ. ବି. ଇଡ଼ ପରେ ଶିକ୍ଷକତା କରୁଛନ୍ତି ଓ ୧୯୬୨ ରୁ ଲେଖା ଆରମ୍ଭ କରିଛନ୍ତି । ନାଟକ, କବିତା ଓ କ୍ଷୁଦ୍ର ଗଳ୍ପ ଲେଖନ୍ତି । ତାଙ୍କର ପାଣ୍ଡୁଲିପି ଗୁଡ଼ିକ ହେଲା — ମୁଁ କଏ, ଯବାନ ଓ ସମାପ୍ତ ୯ ଖଣ୍ଡ । ସେ ଗୀତ ଗାଇ ପାରନ୍ତି ଓ ଅଭିନୟ କରି ପାରନ୍ତି । ବର୍ତ୍ତମାନ ବ୍ରାହ୍ମଣପାଦସ୍ଥ ବନ୍ଧୁପାଷ ହାଇସ୍କୁଲରେ ପ୍ରଧାନ ଶିକ୍ଷକ ଅଛନ୍ତି ।

